ଅନାଗତ

ନାରାୟଣ ସାହୁ

ପ୍ରକାଶକ :
ସତ୍ୟନାରାୟଣ ବୁକ୍ ଷ୍ଟୋର୍
ବିନୋଦ ବିହାରୀ, କଟକ-୨

ଅକ୍ଷର ବିନ୍ୟାସ :
ବାବାଗତିଶ୍ୱର ଡିଟିପି ସେଣ୍ଟର
ବିଡ଼ାନାସୀ, କଟକ-୧୪

ମୁଦ୍ରଣ :
ମଜଦୁର୍ ପ୍ରିଣ୍ଟର୍ସ
କଟକ

ପ୍ରଥମ ସଂସ୍କରଣ :
୨୦୧୯

ମୂଲ୍ୟ :
୫୭ ଟଙ୍କା ମାତ୍ର

ANAGATA

Narayan Sahoo

Publisher :
Satyanarayan Book Store
Binod Bihari, Cuttack-2

Layout Design :
BabaGatiswar DTP Center
Bidanasi, Cuttack-14

Printing:
Majdoor Printers
Cuttack

First Edition :
2019

Price :
Rs. 57/- only

# ଅନାଗତ

## ଚରିତ୍ର

- ଲେଖକ
- ବଳରାମ
- ଜଗନ୍ନାଥ
- ମିତା
- ଡାକ୍ତର
- ରାମୁ
- ଗୁନି
- ଛୋଟେଝିଅ
- ବିଲୁ
- ଅନାମିକା

- ପ୍ରଥମ ମଞ୍ଚାୟନ - ଦୂରଦର୍ଶନ, ଭୁବନେଶ୍ୱର
- ଦ୍ୱିତୀୟ ମଞ୍ଚାୟନ - ରବୀନ୍ଦ୍ରମଣ୍ଡପ, ଭୁବନେଶ୍ୱର
- ତୃତୀୟ ମଞ୍ଚାୟନ - ଭଞ୍ଜକଳାମଣ୍ଡପ, ଭୁବନେଶ୍ୱର

## କୃତଜ୍ଞତା

ଦୂରଦର୍ଶନ କର୍ତ୍ତୃପକ୍ଷ, ଭୁବନେଶ୍ୱର

ସୁନୀତିଦେବୀ, ଦୂରଦର୍ଶନ

ରବୀନ୍ଦ୍ରମଣ୍ଡପ, ଭୁବନେଶ୍ୱର

ଭଂଜକଳାମଣ୍ଡପ, ଭୁବନେଶ୍ୱର

ମଞ୍ଚାୟନ - ଲାବଣ୍ୟ ଥିଏଟର୍ସ, ଭୁବନେଶ୍ୱର

ନିର୍ଦ୍ଦେଶକ - ସତ୍ୟ ଜେନା

ସଂଗୀତ - ଶକ୍ତି ମିଶ୍ର

# ପ୍ରସ୍ତାବନା

ମଞ୍ଚରେ ଆଲୋକର ବର୍ଣ୍ଣାଳୀ ମଧ୍ୟରେ ଭାସି ଆସିଛି
କିଚିରିମିଚିରି ଶବ୍ଦ । ପରେ ଗୋଟିଏ ଶିଶୁର କ୍ରନ୍ଦନ ।
ଏହି କ୍ରନ୍ଦନ ଧ୍ୱନି କ୍ରମଶଃ ବହୁଗୁଣିତ ହେବାରେ
ଲାଗିଛି । ଅସଂଖ୍ୟ ଶିଶୁଙ୍କ କ୍ରନ୍ଦନର ରୋଳ ମଧ୍ୟରେ
ମଞ୍ଚକୁ ଆଗେଇ ଆସିଛନ୍ତି ଲେଖକ । ସାଙ୍ଗରେ ଆସିଛି
ଏକ ଛୋଟ ଝିଅ ।

ଲେଖକ : ହେ ସୁଧୀ ଦର୍ଶକବୃନ୍ଦ । ଆପଣମାନେ ଥରେ ଭାବନ୍ତୁ । ଏ କନ୍ୟାରତ୍ନଟିକୁ
ଦେଖନ୍ତୁ । ଏଇ ଶିଶୁଟି କାଲି ଯୁବତୀ ହେବ । ସମୟ ସ୍ରୋତରେ ସିଏ
ହୁଏତ କାହାରି ଜନନୀ କିମ୍ବା ଜାୟା ହେବ । ଆଉ ପାଳନ କରିବ ଏଇ
ପୃଥିବୀକୁ । ଭଗିନୀ-ଜନନୀ-ଜାୟା ରୂପରେ ସିଏ ହେଉଛି ସର୍ବଂସହା ।
ନୂତନ ସୃଷ୍ଟିର ସର୍ଜନାରେ ସିଏ ହୁଏ ପ୍ରଥମ କୋରକ ।

ତା'ହେଲେ କୁହନ୍ତୁ । ଆମେ କ'ଣ ଭ୍ରୂଣହତ୍ୟା ବନ୍ଦ କରି ପାରିବାନି ?
କନ୍ୟା ଭ୍ରୂଣ ହତ୍ୟାକୁ ବିରୋଧ କରି ସମଗ୍ର ବିଶ୍ୱ ଆଜି ଆଗେଇ
ଆସିଛି । ଆସନ୍ତୁ ଆମେ ବି ସେହି ଦୌଡ଼ରେ ସାମିଲ ହେବା ।

[ ଛୋଟ ଝିଅଟିକୁ ଧରି ଲେଖକ ଏକ କାଳ୍ପନିକ ବୃତ୍ତର
ପରିଧି ଅଙ୍କନ କରିଛନ୍ତି । ]

# ପ୍ରଥମ ଦୃଶ୍ୟ

**ଚରିତ୍ର**

- ଡାକ୍ତର
- ଅନାମିକା

ଡାକ୍ତରଙ୍କ ପ୍ରକୋଷ୍ଠ । ଆଧୁନିକ ସାଜସଜା ।

ସମୟ - ରାତି

[ ଡାକ୍ତର ବେସିନ୍‌ରେ ହାତ ଧୋଉଛନ୍ତି । ଟେବୁଲ୍ ଉପରେ ଥିବା ମୋବାଇଲ୍ ରିଙ୍ଗ ହୋଇଛି । ଟାଉଏଲ୍‌ରେ ହାତ ପୋଛି ମୋବାଇଲ୍ ପାଖକୁ ଆସିଛନ୍ତି ଡାକ୍ତର । ମୋବାଇଲ୍ ଧରିଛନ୍ତି । ]

ଡାକ୍ତର : 'ହାଲୋ'..... 'ହାଲୋ'..... 'ହାଲୋ'..... (ବିରକ୍ତ ହୋଇଛନ୍ତି) । ଇଡିଅଟ୍.....

[ ମୋବାଇଲ୍ ରଖି ଦେଉଛନ୍ତି । ପୁଣି ରିଙ୍ଗ୍ ହୋଇଛି । କାନପାଖକୁ ନେଉଛନ୍ତି । ]

ଡାକ୍ତର : 'ହାଲୋ'..... 'ହାଲୋ'..... No answer.....

ଅଦ୍ଭୁତ କୋଉଠିକାର.....। କ'ଣ ଭାବିଛନ୍ତି ଏମାନେ ନିଜକୁ..... ।

[ ମୋବାଇଲ୍ ରଖିଛନ୍ତି ଟେବୁଲ୍ ଉପରେ । ଉଠିଛନ୍ତି ଯିବା ପାଇଁ । ସେକେଣ୍ଡ ମୋବାଇଲ ରିଙ୍ଗ୍ ହୋଇଛି । ସେକେଣ୍ଡ ମୋବାଇଲ ଧରିଛନ୍ତି ଭୀଷଣ ବିରକ୍ତି ସହକାରେ ]

ଡାକ୍ତର : 'ହାଲୋ'..... 'ହାଲୋ..... ସ୍କାଉଣ୍ଡ୍ରେଲ୍ କୋଉଠିକାର..... ଗୋଟାଏ ଫାର୍ସ ଚଳାଇଛି ।

[ ସେକେଣ୍ଡ ମୋବାଇଲ୍ ରଖିଛନ୍ତି ଟେବୁଲ୍‌ରେ । ]

ଡାକ୍ତର : କିଏ ଗୋଟାଏ ବଦ୍‌ମାସ୍..... । ନା'..... ଯାର କିଛି ଗୋଟାଏ ପ୍ରତିକାର କରିବାକୁ ପଡ଼ିବ.....। ନିଶ୍ଚୟ.....

[ ଏକାସାଥିରେ ଦୁଇଟାଯାକ ମୋବାଇଲ ରିଙ୍ଗ୍ ହୋଇଛି । ମୋବାଇଲ ଦୁଇଟିକୁ ଦୁଇ ହାତରେ ଧରି କାନ ପାଖକୁ ନେଇଛନ୍ତି ଡାକ୍ତର..... ଲାଇଟ୍ ଧୀରେ ଧୀରେ ଡିମ୍ ହେବାକୁ ଲାଗିଛି । ରିଙ୍ଗ୍ ବନ୍ଦ ହୋଇ ଯାଇଛି । ଭୟଭୀତ ଡାକ୍ତର । ]

ଡାକ୍ତର : 'ହାଲୋ'..... 'ହାଲୋ'..... 'ହାଲୋ'..... ଏତିକି ବେଳକୁ ଭୋଲ୍‌ଟେଜ୍‌ଟା କମିବାକୁ ଥିଲା..... । ଟେଲିଫୋନ୍ ବିଭାଗଟା କ'ଣ କରୁଛି । ଅଯଥାରେ ଏମାନେ କଷ୍ଟମରକୁ ହଇରାଣ ହରକତ କରୁଛନ୍ତି..... । କେହି ବି ଦୃଷ୍ଟି ପକଉନାହାନ୍ତି..... କାହିଁକି ଯେ ଯେ ସରକାରୀ ବିଭାଗଟା ରହିଛି ।

[ ନିଜକୁ ଯେତେ ଶକ୍ତ କରିବାକୁ ଚେଷ୍ଟା କରୁଥିଲେ ହେଁ ମନ ଭିତରେ ଅଜଣା ଭୟର ସଂଚାର ହେବାକୁ ଲାଗିଛି । ଗୋଟିଏ ଅସ୍ୱାଭାବିକ ଶବ୍ଦ ହୋଇଛି । ପରେ ପରେ ଶିଶୁର କ୍ରନ୍ଦନ ଶୁଣାଯାଇଛି । ]

ଡାକ୍ତର : କ'ଣ ଯେ ଏ ସବୁ ଘଟୁଛି । ଏତିକିବେଳକୁ ଏ ରାମୁଟା କୁଆଡ଼େ ଫେରାର ହୋଇଗଲା ।

[ କ୍ରନ୍ଦନ ବନ୍ଦ ହୋଇଯାଇଛି । ଡାକ୍ତରଙ୍କ ପଛପଟେ ତାଙ୍କ କାନ୍ଧରେ ଦୁଇଟା ହାତ ରଖିଛି ଅନାମିକା । ପଛପଟୁ ଧୀରେ ଧୀରେ ଉଠି ହାତ ଦେବ ଅନାମିକା । ଚମକି ପଡ଼ିଛନ୍ତି ଡାକ୍ତର । ଭୟରେ ଥରୁଥା'ନ୍ତି । ]

ଡାକ୍ତର : କିଏ ? କିଏ ?

ଅନାମିକା : ଡରିଗଲ କି ଡାକ୍ତର ?

ଡାକ୍ତର : କିଏ..... କିଏ ତମେ ?

ଅନାମିକା : ଉଁ..... ହୁଁ..... ଏତେ ବ୍ୟସ୍ତ କାହିଁକି ? ଆଗ ଏଇଟା ପିଇଦିଅ ।

[ ପାଣି ଗ୍ଲାସ ଉପରେ ଦୃଷ୍ଟି ପଡ଼ିଛି ଅନାମିକାର । ଟେବୁଲ୍ ଉପରେ ଥିବା ପାଣିଗ୍ଲାସ୍‌ଟା ବଢ଼ାଇ ଦେଇଛି । ଡରି ଡରି ପିଉଛନ୍ତି ଡାକ୍ତର । ସର୍ବାଙ୍ଗରେ କମ୍ପନ । ]

ଡାକ୍ତର : କ୍ଲିନିକ୍ ବନ୍ଦ ହେଲାଣି । ଷ୍ଟାଫ୍ ନାହାନ୍ତି । କାଲି ଆସିବ । ଯାଅ..... ଆଜି କିଛି ହୋଇପାରିବନି.....।

ଅନାମିକା : ବାସ୍ ! ସବୁତକ ଉତ୍ତର ଏକାସାଙ୍ଗରେ ଦେଇଦେଲ, ଡାକ୍ତର । ଉଁ ହୁଁ, ଆଦୌ ଭୟ କରନି ।

ଡାକ୍ତର : କିଏ ତମେ ? କ'ଣ ଚାହଁ ? ଏଠାକୁ କାହିଁକି ଆସିଛ ?

ଅନାମିକା : ମୁଁ ଅନାମିକା । ଅନାମିକାର ମାନେଟା ନିଶ୍ଚୟ ବୁଝି ପାରୁଥିବ । ନା' ମତେ ପୁଣି ବୁଝେଇବାକୁ ପଡ଼ିବ.....

ଡାକ୍ତର : ଦରଜା ବନ୍ଦ ଥିଲା । ଭିତରକୁ କେମିତି ଆସିଲ ?

[ ଡାକ୍ତରଙ୍କ ସର୍ବାଙ୍ଗ ଥରୁଥିଲା । ପାଟି ଖନି ବାଜି ଯାଉଥିଲା । ]

ଅନାମିକା : ଅନାମିକାମାନେ ସବୁଠି ସବୁ ସମୟରେ ବିନା କଷ୍ଟରେ ପହଂଚିଯାଇ ପାରନ୍ତି । ଯେମିତି ଏଠି ପହଂଚିଗଲି..... ।

ଡାକ୍ତର : ମୁଁ ସଫା ସଫା କହିଦଉଛି, ଆଜି କିଛି ହୋଇପାରିବନି । ଆମ ନର୍ସିଙ୍ଗ ହୋମ୍‌ରେ କେହି ନାହାନ୍ତି ।

ଅନାମିକା : ଯଦି ଦଶଗୁଣ ଫିସ୍ ଦିଏ ?

[ ମଥା ଟେକି ଚାହିଁଛନ୍ତି ଡାକ୍ତର । ]

ଡାକ୍ତର : ମାନେ ?

ଅନାମିକା : ତମର ଫିସ୍ ଦରକାର, ମୋର କାମ ହେବା ଦରକାର । ଗୋଟାଏ 'ଗର୍ଭପାତ' ପାଇଁ ତମେ ଦୁଇହଜାର ନଉଛ । ମୁଁ କୋଡ଼ିଏ ହଜାର ଦେବି । କୋଡ଼ିଏ ହଜାର..... କ'ଣ କହୁଛ ଡାକ୍ତର..... ?

[ ବିବ୍ରତ ହୋଇ ପଡ଼ିଛନ୍ତି ଡାକ୍ତର । କ'ଣ କରିବେ କିଛି ଚିନ୍ତା କରି ପାରୁନାହାନ୍ତି; ମାତ୍ର ଟଙ୍କା ପ୍ରତି ମୋହ ତାଙ୍କ ମୁଖମଣ୍ଡଳରୁ ସ୍ପଷ୍ଟ ବାରିହୋଇ ପଡୁଛି । ]

ଅନାମିକା : ଡରିଯାଅନା.....। ପଇସା ପାଇବ..... ମୋଟା ଅଙ୍କର । ଏକାସାଙ୍ଗରେ ଏତେଗୁଡ଼ିଏ ଟଙ୍କା କେବେ ବି ଦେଖି ନ ଥିବ ! ତା'ପରେ ପଇସା ପାଇଁ ତ ତମେ ସବୁକିଛି କରିପାରିବ !

ଡାକ୍ତର : ମାନେ ! କ'ଣ କହିବାକୁ ଚାହଁ ?

ଅନାମିକା : ରିଲାକ୍‌ସ ଡାକ୍ତର..... ରିଲାକ୍‌ସ.....

[ ଜୋର୍ କରି ଚେୟାର ଉପରେ ବସାଇଦେଇଛି ଡାକ୍ତରଙ୍କୁ ଅନାମିକା । ଗ୍ଲାସ୍‌ରେ ଅବଶିଷ୍ଟ ପାଣି ପିଇବାକୁ ଦେଇଛି । ଡାକ୍ତର ଅନିଚ୍ଛୁକ ହେବାରୁ ନିଜେ ପିଆଇଦେଇଛି । ]

ଅନାମିକା : ଏଥର ମୋ ପ୍ରଶ୍ନର ଉତ୍ତର ଦିଅ ।

ଡାକ୍ତର : ତମେ କିଏ ? କ'ଣ ଚାହଁ ମୋ ଠାରୁ ?

ଅନାମିକା : କହୁଛି ମୁଁ 'ଅନାମିକା'.....। ବାକି ରହିଲା ମୋର ଚାହିଁବା କଥା। ଆଜି ପର୍ଯ୍ୟନ୍ତ ତମ କ୍ଲିନିକ୍‌ରେ ୩୩୩ଟି ଆବୋର୍ସନ୍..... ୨୯୦ଟି କନ୍ୟାଭ୍ରୂଣ ହତ୍ୟା ହୋଇସାରିଛି । ଗତକାଲିର କେଶ୍‌ଟାକୁ ବି ହିସାବକୁ ନେଇଛି ।

[ ଡାକ୍ତର ବିବ୍ରତ ଭାବେ ଦୃଷ୍ଟି ନିକ୍ଷେପ କରୁଥିଲେ । ]

ଡାକ୍ତର : ଏ ସବୁ ଡାଟା !

ଅନାମିକା : କ'ଣ ମିଛ ? କୁହ ଡାକ୍ତର.....

ଡାକ୍ତର : ମୋ ବିରୁଦ୍ଧରେ ରୀତିମତ ଗୋଟାଏ ଚକ୍ରାନ୍ତ..... ନିଶ୍ଚୟ କେହି ତମକୁ ଉସ୍‌କାଉଛି.....। କେତେ ଚାହଁ ? କେତେ ପଇସା ଦରକାର ?

ଅନାମିକା : ତମେ ତ ଗୋଟାଏ ଭିକାରି । ମତେ କ'ଣଟା ଦେଇପାରିବ ? ମୁଁ କେବଳ ଆସିଥିଲି ଚେତେଇଦବାକୁ ।

[ ଅନାମିକା ଧୀରେ ଧୀରେ ଗମ୍ଭୀର ହୋଇଉଠିଛି । ]

ତମ ପାପର ଘଡ଼ାଟା ପୂରି ପୂରି ଆସୁଛି । ବି କେଆରଫୁଲ୍..... । ମୁଁ ଯାହା କହିଲି, ସବୁ ମନେ ରଖିଲ, ନା, ନାହିଁ ?

[ ଅନାମିକା ଧୀରେ ଧୀରେ ପଛକୁ ବୁଲି ଯାଇଛି ଏବଂ ଡାକ୍ତରଙ୍କ ଚେୟାର ପଛପଟେ ଅଦୃଶ୍ୟ ହୋଇଯାଇଛି । ]

ନିଜର ଦୁଇକାନକୁ ଚିପି ଧରିଛନ୍ତି ଡାକ୍ତର । ଘଣ୍ଟାର ଟିକ୍ ଟିକ୍ ଆୱାଜ ଧୀରେ ଧୀରେ ଶୂନ୍ୟ ଡିଗ୍ରୀରୁ ବଢ଼ି ବଢ଼ି ଚାଲିଛି । ଚିତ୍କାର କରିଛନ୍ତି ଶେଷକୁ ଡାକ୍ତର.....

ଡାକ୍ତର : 'ନା'..... ଆ..... ଆ.....

[ ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇଆସିଛି । ]

# ଦ୍ୱିତୀୟ ଦୃଶ୍ୟ

<u>ଚରିତ୍ର</u>

* ରୁନି
* ଜଗନ୍ନାଥ
* ମିତା

ସମୟ : ସନ୍ଧ୍ୟା

[ ମଧ୍ୟବିତ୍ତ ପରିବାରର ଡ୍ରଇଙ୍ଗରୁମ୍ । ଚିନ୍ତିତ ମନରେ ବସିଥିଲେ ଗୃହକର୍ତ୍ତା ଜଗନ୍ନାଥ । ଭିତରୁ ଡାକି ଡାକି ଆସିଛି ନାତୁଣୀ ରୁନି । କାନ୍ଥରେ ଜଗନ୍ନାଥଙ୍କ ଫଟୋ । ଫଟୋକୁ ଚାହିଁ ରହିଥିଲେ । ]

ରୁନି : ଅଜା..... ଅଜା.....

[ ଜଗନ୍ନାଥଙ୍କ ପାଖକୁ ଯାଇଛି । ଜଗନ୍ନାଥଙ୍କୁ ଏପରି ତନ୍ମୟ ଅବସ୍ଥାରେ ଦେଖି ତାଳିମାରି ତାଙ୍କୁ ସଚେତନ କରାଇଛି । ]

ଜଗନ୍ନାଥ : ଆରେ ମା' ତୁ କେତେବେଳେ ଆସିଲୁ ?

ରୁନି : ଅଜା, କ'ଣ ଏତେ ଚିନ୍ତା କରୁଥିଲ ?

ଜଗନ୍ନାଥ : ନା'..... କିଛି ନାହିଁ । ଆଇ ପୂଜା ସାରିଲାଣି ?

ଝୁନି : ହଁ । (Pause) ଅଜା ତମକୁ ଗୋଟାଏ କଥା ପଚାରିବି । କହିବ ?

ଜଗନ୍ନାଥ : ଗୋଟାଏ କାହିଁକି, ଦଶଟା କଥା ପଚାର । ନିଶ୍ଚୟ କହିବି ।

ଝୁନି : ତମେ ମନୋଦୁଃଖ କରିବନି ତ ? ମତେ ଗାଳି ଦବନି ତ ?

ଜଗନ୍ନାଥ : ପାଗଳୀଟା, କ'ଣ ଲଆବୁ ସିଆବୁ କହୁଛୁ ? ତୋ ମା'ଟା ସିନା ଅଧାପିକା, ହେଲେ ତୁ ପକ୍କା ଓକିଲଟାଏ ହବୁ ।

ଝୁନି : ତମର ପୁଅ ନାହିଁ ବୋଲି ତମେ ମନ ଦୁଃଖ କରୁଛ । ଆଈ ବି ମନମାରି ବସୁଛି । କହୁଛି, ବୁଢ଼ାବୁଢ଼ୀ ହେଲୁଣି । ଆଉ ଟିକିଏ ବୟସ ବଢ଼ିଗଲେ ଆମ କଥା କିଏ ବୁଝିବ ।

ଜଗନ୍ନାଥ : ତୋ ଆଈଟା ପାଗଳୀଟାଏ । ତୁ କାହିଁକି ତା' କଥା ବିଶ୍ୱାସ କରୁଛୁ ? ତିନିଟାଯାକ ଝିଅ ହଉଛନ୍ତି ମୋର ପୁଅ । ଭଲ ଘରେ ବାହାଦେଇଛି । ପିଲାକବିଲା ଧରି ସମସ୍ତେ ଭଲରେ ଅଛନ୍ତି । ମୋର ଆଉ ଅଭାବ କ'ଣ ?

ଝୁନି : ତା'ହେଲେ ସଦାବେଳେ ତମେ ବି'ଜଣ ମନମାରି ବସୁଛ କାହିଁକି ? କେହି ନ ଆସନ୍ତୁ, ମୁଁ ତ ତମ ପାଖରେ ଅଛି ।

ଜଗନ୍ନାଥ : ତୁ ଆମ ପାଖରେ ରହିବୁ ?

ଝୁନି : ହଁ, ମମିକି କହିଦେବି । ମୁଁ ଏଇଠି ରହିବି । ଆଉ ଏଇଠି ପଢ଼ିବି ।

ଜଗନ୍ନାଥ : ନା'..... ସବୁ ବାପା ମା' ଚାହାଁନ୍ତି ସେମାନଙ୍କ ପିଲା ପାଖରେ ରୁହନ୍ତୁ । ମୁଁ କାହିଁକି ସ୍ୱାର୍ଥପର ହେବି । ସେମାନଙ୍କ ଇଚ୍ଛାକୁ କାହିଁକି ଧୂଳିସାତ୍ କରିଦେବି.....

ଝୁନି : ଆଚ୍ଛା କହିଲ ଅଜା, ଦେହ ଖରାପ ହେଲେ କିଏ ତମକଥା ବୁଝିବ ?

ଜଗନ୍ନାଥ : ଆଗକୁ କ'ଣ ଘଟିବ, ସେ କଥା କେହି କହିପାରିବନି । ହେଲେ, ତା' ପାଇଁ ଏତେବେଳୁ ଚିନ୍ତା କାହିଁକି ?

[ ଘର ଭିତରୁ କହି କହି ଆସିଛନ୍ତି ମିତା । ]

ମିତା : ମୋ ନାତୁଣୀ କ'ଣ ଖରାପ କଥାଟା କହିଲା ଯେ !

ଜଗନ୍ନାଥ : ଓ, ତମେ ତା'ହେଲେ ଲୁଚିକରି ଆମକଥା ଶୁଣୁଥିଲ ।

ମିତା : କଥାଟା କାନରେ ପଡ଼ିଗଲା, ନହେଲେ ମୁଁ କାହିଁକି ଶୁଣିବାକୁ ଯାଉଥା'ନ୍ତି !

ଜଗନ୍ନାଥ : ରୁନି କହୁଛି ଆମ ପାଖରେ ରହିବ ।

ମିତା : ତା' ମା' ତାକୁ ଛାଡ଼ିଦବ ! କାହିଁକି ସେ ମିଛମାୟା ଭିତରେ ପଶୁଛ ! ଠାକୁର, ଆମପାଇଁ ଯାହା ରଖିଥିବେ !

ଜଗନ୍ନାଥ : ହଉ ମା' ତୁ ଯା' ଖେଳିବୁ । ତୋ ଖେଳିବା ଟାଇମ୍ ହୋଇଯାଉଛି ।

[ ରୁନି ବାହାରକୁ ଚାଲିଯାଉଛି । ]

ଜଗନ୍ନାଥ : ଶୁଣ ମିତା, ତମେ ଆଦୌ ଭାଙ୍ଗି ପଡ଼ନି । ସବୁ ଠିକ୍ ହୋଇଯିବ । ଯିଏ ଜନ୍ମ ଦେଇଛି, ସିଏ ନିଶ୍ଚୟ କିଛି ନା କିଛି ବନ୍ଦୋବସ୍ତ କରିଥିବ ।

ମିତା : ଏଇ କଥା ଶୁଣି ଶୁଣି ମୋ କାନ ବଧିରା ହୋଇଗଲାଣି । ମୁଁ ଛୋଟ ଛୁଆଟେ ନୁହେଁ, ଭୁଲେଇ ଦବ !

ଜଗନ୍ନାଥ : ମିତା, ତମ ମନର ଅବସ୍ଥା ମୁଁ ବୁଝିପାରୁଛି । ପୁଅଟିଏ ଆଶା କରି କରି ତିନି ତିନିଟା ଝିଅ ଆସିଗଲେ । ଶେଷଟାକୁ ବିନା ଆମେ—

ମିତା : ଆଃ, ଥାଉ..... ସେ ପଛକଥା ଆଉ ପକାଅନି । ଚାଲୁନ, ଟିକେ ସାଇମନ୍ଦିର ଆଡ଼େ ବୁଲି ଆସନ୍ତେ ।

ଜଗନ୍ନାଥ : ହଁ, ସେଇ ମନ୍ଦିର ମସ୍‌ଜିଦ୍ ହିଁ ଆମର ଶେଷଭରସା । ଅନ୍ତତଃ ମାନସିକ ଶାନ୍ତି ତ ମିଳିବ ।

[ ସାଇ ମନ୍ଦିରର ଆରତି ସମୟର ଘଣ୍ଟଧ୍ୱନି ସହ ସାଇ ଭଜନର ଗୋଟିଏ ପଙ୍‌କ୍ତି ଭାସି ଆସିଛି । ସାଇଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ୁଥିଲେ ଜଗନ୍ନାଥ ଆଉ ମିତା । ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇ ଆସିଛି । ]

## ଦ୍ୱିତୀୟ ଦୃଶ୍ୟ

ଚରିତ୍ର

* ଡାକ୍ତର
* ଅନାମିକା

ଡାକ୍ତରଙ୍କ ସେହି ପ୍ରକୋଷ୍ଠ ସବୁ ସେମିତି ରହିଛି ।

ସମୟ : ରାତି

[ ଡାକ୍ତର ପ୍ରେସ୍କ୍ରିପ୍ସନ ଲେଖୁଥିଲେ । ଆଗରେ ବସିଥିଲା ଅନାମିକା । ଡାକ୍ତର ପ୍ରେସ୍କ୍ରିପ୍ସନଟି ଲେଖି ପେସେଣ୍ଟକୁ ବଢ଼ାଇଲା ବେଳେ ତାଙ୍କ ହାତରୁ ନେଇଛି ଅନାମିକା । ଅନାମିକାକୁ ଦେଖି ଡାକ୍ତର ବିବ୍ରତ ହୋଇପଡ଼ିଛନ୍ତି । ଲାଇଟ୍ ମଧ୍ୟ ଧୀରେ ଧୀରେ ଡିମ୍ ହୋଇଆସିଛି । ]

ଡାକ୍ତର : ତମେ ପୁଣି ।

ଅନାମିକା : ମୁଁ କହିଥିଲିନା' ପୁଣି ଆସିବି । ଯେଉଁଦିନ ଯାଏ ଡାକ୍ତର ତମେ ଏ ପାପକାର୍ଯ୍ୟ ବନ୍ଦ ନ କରିଛ, ସେତେଦିନଯାଏ ମୁଁ ଏମିତି ଆସୁଥିବି ।

ଡାକ୍ତର : ତମେ ମୋର କିଛି କରିପାରିବନି । ମତେ ଧମକ ଦେବାକୁ ତମେ କିଏ ? ଏଇଟା ମୋର ବ୍ୟକ୍ତିଗତ କାର୍ଯ୍ୟ ।

ଅନାମିକା : ନା..... ନା..... ଡାକ୍ତର । ତମେ ଭୁଲ୍ କରୁଛ । ଏ ପୃଥିବୀରୁ କନ୍ୟାଭ୍ରୁଣମାନଙ୍କୁ ନିପାତ କରିବାକୁ ତମେ କିଏ ?

ଡାକ୍ତର : ମୋ ପ୍ରଫେସନରେ ବାଧା ଦେବାକୁ ତମେ କିଏ ?

ଅନାମିକା : ମୋ ପରିଚୟଟା ନିଶ୍ଚୟ ପାଇବ, ଡାକ୍ତର । ହେଲେ ତା' ପୂର୍ବରୁ ମତେ ଆହୁରି ଅନେକ କାମ ସାରିବାକୁ ପଡ଼ିବ । ଡାକ୍ତର କୁହ, ବନ୍ଦ କରିବ ନା' ନାହିଁ ?

ଡାକ୍ତର : ମୁଁ କାହାରି ଧମକରେ ଡରିଯିବା ମଣିଷ ନୁହଁ ।

ଅନାମିକା : ମୁଁ ଜାଣେ ତମ ହାତରେ ପୋଲିସ୍..... ଆଉ ପ୍ରଶାସନ ରହିଛି । ହେଲେ କେତେଦିନ ଆଇନକୁ ଆଖିଠାର ମାରି ଆଗେଇବ ? ଥରୁଟିଏ ପଛକୁ ଫେରିଚାହଁ । ସବୁ ଜଳଜଳ ହୋଇ ଦେଖାଯିବ ।

ଡାକ୍ତର : ବାହାରିଯାଅ ମୋ ଚାମ୍ବରରୁ । ନଚେତ୍ ମୁଁ ପୋଲିସ୍ ଡାକିବାକୁ ବାଧ୍ୟହେବି । ଆଉ କେବେ ବି ଏଠି ପାଦଦବାକୁ ଚେଷ୍ଟା କରିବନି ।

ଅନାମିକା : ଡାକ୍ତର ମୁଁ ଖାଲି ପରଖିବାକୁ ଆସିଥିଲି । ତମ ପାପର ଘଡ଼ାଟା କେତେ ପୂର୍ଣ୍ଣ ହେଲାଣି । ଆଉ କେତେ ବାକି ଅଛି.....

ଡାକ୍ତର : ବାହାରି ଯା..... ବାହାରି ଯା..... କହୁଛି.....

[ ମୋବାଇଲରେ ରିଙ୍ଗ କରିବାକୁ ଯାଉଥିଲେ । ]

ଅନାମିକା : ନା..... ନା..... ପୋଲିସକୁ ଡାକିବା ଦରକାର ନାହିଁ । ତମ ଆସିଷ୍ଟାଣ୍ଟ ରାମୁ ଯଥେଷ୍ଟ.....। ସିଏ ଚାହିଁଲେ–

ଡାକ୍ତର : ହଁ..... ହଁ..... ରାମୁ ଯଥେଷ୍ଟ । 'ରାମୁ'..... 'ରାମୁ'.....

[ ଉଠି ପଡ଼ିଛନ୍ତି ଚେୟାରରୁ ଡାକ୍ତର ରାମୁକୁ ଡାକିବାକୁ । ଇତ୍ୟବସରରେ ଚାଲିଯାଇଛି ଅନାମିକା । ଭିତରକୁ ଆସିଛି ରାମୁ । ଡାକ୍ତର୍ ପୁଣି ସ୍ୱାଭାବିକ ହୋଇ ଉଠିଛି । ]

ରାମୁ : ସାର୍, କ'ଣ ହେଲା ?

ଡାକ୍ତର : ବାଜେ ପେସେଣ୍ଟଗୁଡ଼ାକୁ କାହିଁକି ପଠଉଛୁ ?

ରାମୁ : ଆଉ କେହି ନାହାନ୍ତି ସାର୍ । ସବୁ ପେସେଣ୍ଟ ବିଦା ହେଇ ସାରିଛନ୍ତି ସାର୍ ।

ଡାକ୍ତର : ତା'ହେଲେ 'ଅନାମିକା' ଆସିଲା କେମିତି ?

ରାମୁ : ସେମିତି ପେସେଣ୍ଟ କେହି ଆସି ନାହାନ୍ତି ସାର୍ ।

ଡାକ୍ତର : ଦେଖୁ, ଏଠି ଏ ଚେୟାର ଉପରେ ବସିଛି କିଏ ?

ରାମୁ : (ଚେୟାରକୁ ଚାହିଁ) ଏଠି ତ କେହି ନାହାନ୍ତି ସାର୍ ।

ଡାକ୍ତର : 'ମାନେ'..... ।

[ ଚାରିଆଡ଼କୁ ଦୃଷ୍ଟି ବୁଲାଉଛନ୍ତି ଡାକ୍ତର । ]

ଏଇଠି ତ ବସିଥିଲା !

ରାମୁ : ସାର୍, ଆପଣ–

ଡାକ୍ତର : କ'ଣ ଭାବୁଛୁ, ମୋ ମୁଣ୍ଡ ଖରାପ ? ମୁଁ ନିଜେ ଦେଖିଛି ।

ରାମୁ : ସାର୍, ଅନାମିକା ନାଆଁରେ ସେମିତି କେହି ପେସେଣ୍ଟ ଭିତରକୁ ଆସିନାହାନ୍ତି । ଆପଣ ପେସେଣ୍ଟ ରେଜିଷ୍ଟର ଦେଖିପାରନ୍ତି । ଆଣିବି ସାର୍ ?

ଡାକ୍ତର : ଓଃ, ତମେମାନେ ମୋ ମୁଣ୍ଡ ଖରାପ କରିଦେବ । ମୁଁ ନିଜେ ତା' ସାଙ୍ଗରେ କଥାବାର୍ତ୍ତା କରିଛି । ଆଉଥରେ ବି ସେ ଏଠିକି ଆସିଥିଲା । ବାରମ୍ବାର ସେ ଆସୁଛି ।

ରାମୁ : ସାର୍, ଆଜି ଆପଣ–

ଡାକ୍ତର : କ'ଣ ଭାବୁଛୁ । ମୁଁ drinks ନେଇଛି ?

ରାମୁ : ସାର୍, ଆପଣଙ୍କ ମନ ଆଜି ଭଲନାହିଁ । ଯାଆନ୍ତୁ, ବିଶ୍ରାମ ନେବେ । ଆମେ ପରେ କଥାହେବା । ରାତି ଦଶଟା ବାଜିସାରିଲାଣି ।

ଡାକ୍ତର : ଆରେ ସେ ଝିଅଟା ମୋ ସାମନାରେ ବସି ଏଇଠି କଥାବାର୍ତ୍ତା କରିଛି । କେମିତି ମିଛ ବୋଲି ଭାବିବି ?

ରାମୁ : ସାର୍, କିଛି ସମୟ ଆପଣ ରେଷ୍ଟ ନେଇ ଯାଆନ୍ତୁ । ସବୁ ଠିକ୍ ହୋଇଯିବ ।

ଡାକ୍ତର : ତୁ ମତେ ବିଶ୍ୱାସକରୁନୁ କାହିଁକି ? ମୋ ଦି'ଆଖିକି ତ ମୁଁ ଫାଙ୍କିଦେଇ ପାରିବିନି । କ'ଣ ଯେ ସବୁ ଘଟିଯାଉଛି, ମୁଁ କିଛି ବୁଝିପାରୁନି ।

ରାମୁ : ସାର୍, ଆପଣ କିଛି ଗୋଟାଏ ବିଷୟ ନେଇ ବହୁତ ବେଶି ଚିନ୍ତା କରୁଛନ୍ତି । ସେଇଥିପାଇଁ ଏମିତି ହଉଛି । 'ମୁନା ଭାଇ MBBS'ରେ ବି ସଂଜୟ ଦତ୍ତର ଏଇ ବେମାରି ଥିଲା ।

ଡାକ୍ତର : ବାଜେକଥା ବନ୍ଦ କର । ଯା'..... ଘରକୁ ଯା.....। କାଲି ଆସି ଚାମ୍ବର ଖୋଲିବୁ । ସବୁ କବାଟ ଝରକା ବନ୍ଦ କରିଦେ । ଠିକ୍‌ଭାବେ ବନ୍ଦ କରିବୁ । ଯେମିତି ଭିତରକୁ କେହି ଆସି ନ ପାରେ ।

ରାମୁ : ହେଲେ ଆପଣ ସାର୍–

ଡାକ୍ତର : ମୋ କଥା ମୁଁ ବୁଝିବି । ତୁ ବ୍ୟସ୍ତହବା ଦରକାର ନାହିଁ । ଯା..... ହଁ, ଭଲ ଭାବେ ଚେକ୍ କରି ଯିବୁ ।

[ ରାମୁ ବାହାରକୁ ଚାଲିଯାଇଛି । ଡାକ୍ତର ଚାରିଆଡ଼କୁ ନିରୀକ୍ଷଣ କରିଛନ୍ତି । ଟେବୁଲ ଉପରେ ମଥା ରଖିଛନ୍ତି । ଘଣ୍ଟାର ଟିକ୍‌ଟିକ୍ ଆୱାଜ୍ କ୍ରମଶଃ ବଢ଼ିବାରେ ଲାଗିଛି.....। ମଞ୍ଚ ଧୀରେ ଧୀରେ ଅନ୍ଧାର ହୋଇଆସିଛି । ]

# ଚତୁର୍ଥ ଦୃଶ୍ୟ

<u>ଚରିତ୍ର</u>

* ଅନାମିକା
* ଜଗନ୍ନାଥ
* ରୁନି
* ବଳରାମ

[ ଜଗନ୍ନାଥଙ୍କ ଡ୍ରଇଂରୁମ୍। ଜଗନ୍ନାଥ ମୁହଁ ଉପରେ ପେପର ଘୋଡ଼ାଇ ବସିଛନ୍ତି । ସମୟ ରାତ୍ରିର ପାହାନ୍ତିପ୍ରହର । ଝାପ୍‌ସା ଅନ୍ଧାର । ଭିତରକୁ ଆସିଛି ଅନାମିକା.....]

ଅନାମିକା : କ'ଣ ଭାବୁଛ ?

ଜଗନ୍ନାଥ : ରାତି ପାହିବାକୁ ଆଉ କେତେ ବାକି ଅଛି ।

ଅନାମିକା : ଦି' ଘଡ଼ି ଅଛି । ଆଉ ନାତୁଣୀ ନିଘୋଡ଼ ନିଦରେ ଶୋଇଛନ୍ତି । ତମେ କାହିଁକି ଉଠିଆସିଲ ?

ଜଗନ୍ନାଥ : ନିଦ ହେଲାନି ।

ଅନାମିକା : ମିଛ କଥା । ତମେ ତମର ସେଇ ତିନିଝିଅଙ୍କ କଥା ଭାବୁଥିଲ । କେହି ବି ତମ ଦିହିଙ୍କ ପାଇଁ ସମୟ ଦେଇପାରୁନାହାନ୍ତି । ଆଜିତ ଏମିତି, କାଲି ପାଦ ଅଚଳ ହୋଇଗଲେ.....? ମୁଁ ଠିକ୍ କହିଲି ନା'.....?

ଜଗନ୍ନାଥ : ଓଃ, କ'ଣ ଦରକାର ସେଗୁଡ଼ାକ, ମିତା ?

ଅନାମିକା : 'ମିତା' ନୁହେଁ ମୁଁ 'ଅନାମିକା'.....

[ ମୁହଁ ଉପରୁ କାଗଜ ଖସି ପଡ଼ିଛି । ସାମନାରେ ଅନାମିକାକୁ ଦେଖି ବିବ୍ରତ ହୋଇ ପଡ଼ିଛନ୍ତି ଜଗନ୍ନାଥ.....]

ଜଗନ୍ନାଥ : ତମେ କିଏ ?

ଅନାମିକା : ଅନ୍ତତଃ ଶତ୍ରୁ ତ ନୁହେଁ । ନାଁ'ଟା ହେଲା 'ଅନାମିକା' । ଏଇ ନାଁ'ଟା ସାଙ୍ଗରେ ମୋ ଜୀବନରେଖା ବି ଗଢ଼ିଚାଲିଛି ।

ଜଗନ୍ନାଥ : ମୋ ପାଖରେ ତମର କି କାମ ?

ଅନାମିକା : ନିଶ୍ଚୟ କହିବି । ଏତେ ଡରବର କାହିଁକି ? ମୁଁ ହେଉଛି ତମ ଝିଅ । ମାନେ ଚତୁର୍ଥ ସନ୍ତାନ । 'ଅନାମିକା'.....

ଜଗନ୍ନାଥ : କ'ଣ ଏସବୁ କହୁଛୁ ! ବାଜେ କଥା ବନ୍ଦକର । ମୋର ତିନିଝିଅ । ଆଉ ସେ ତିନିଜଣ ହଉଛନ୍ତି ବାସନ୍ତୀ, ମିନତୀ, ଅବନ୍ତୀ । ବାସ୍..... ଯା' ପରେ ଆଉ କେହି ନାହାନ୍ତି ।

ଅନାମିକା : ତା'ପରଟା ହଉଛି 'ଅନାମିକା' । ଅବଶ୍ୟ ସୁଜାତି ନାଁ'ଟା ଭଲ ସାଜିଥା'ନ୍ତା । ହେଲେ ମତେ ଅନାମିକା ନାଁ'ଟା ଦେଇ କି ଲାଭ ପାଇଲ ? କାହିଁକି ମତେ ଅନାମିକା କଲ ?

ଜଗନ୍ନାଥ : କାହାକୁ କ'ଣ କହୁଛୁ ? ତୁ କିଏ ?

ଅନାମିକା : ଥରେ କହିଛି, ତମ ଝିଅ । ଯା' ପରେ ତମେ ପଚାରିବ, ମୁଁ ଘର ଭିତରକୁ କେମିତି ଆସିଲି ? ଭେରି ସିମ୍ପଲ..... ମୋର ବି ଏ ଘରେ ଅଧିକାର ଅଛି । ଠିକ୍ ତମର ଅନ୍ୟ ଝିଅମାନଙ୍କ ଭଳି.....

ଜଗନ୍ନାଥ : ଭଲରେ ଭଲରେ କହିଦେଉଛି, ଚାଲିଯା'..... ଏଠୁ ।

ଅନାମିକା : ମୋ ଘରୁ ମତେ ତଡ଼ିବାକୁ ତମେ କିଏ ? ତା'ପରେ, କୌଣସି ପିତା କ'ଣ କେବେ କନ୍ୟାକୁ ଏଭଳି ହତାଦର କରିପାରେ !

ଜଗନ୍ନାଥ : ଓଃ, ବନ୍ଦକର ସେ 'ପିତା'..... 'ପିତା' ଶବ୍ଦ । ଅନାମିକା ନାଁ'ରେ ମୋର କେହି ଝିଅ ନାହାନ୍ତି କି ନ ଥିଲେ ।

ଅନାମିକା : 'ଅନାମିକା' ତମ ଝିଅ, ଏ କଥା ମୁଁ ଚିତ୍କାର କରି କହିବି । ତମେ ହିଁ ମୋର ପିତା.....। ମାଇଁ ଡିଅର ଫାଦର.....

ଜଗନ୍ନାଥ : ଥରେ କହିଲି ନା'.....। 'ନା'..... 'ନା'..... 'ନା'.....। ବାସ୍ !

[ ବିରକ୍ତ ହେଉଥିଲେ ଜଗନ୍ନାଥ । ]

ଅନାମିକା : ଏମିତି ଚିତ୍କାର କଲେ, ଭାବିଛ ମୁଁ ଛାଡ଼ିଦେବି ? କଦାପି ନୁହେଁ। ତମ ଅନ୍ୟଝିଅମାନେ ଡରକୁଳା । ହେଲେ ମୁଁ ସେମିତି ନୁହେଁ ।

ଜଗନ୍ନାଥ : ବାହାର..... ବାହାର ମୋ ଘରୁ..... । ବାହାର୍..... କହୁଛି.....

[ ଜଗନ୍ନାଥଙ୍କ ସର୍ବାଙ୍ଗ ରାଗରେ ଥରୁଥିଲା । ବାହାରି ଯାଇଛି ଅନାମିକା । ଘର ଭିତରୁ ଦଉଡ଼ି ଆସିଛନ୍ତି ମିତା ଆଉ ରୁନି.....। ଲାଇଟ୍ ସ୍ୱାଭାବିକ ହୋଇଛି । ]

ମିତା : କାହାକୁ ବାହାରିଯିବାକୁ କହୁଛ ? କେହି ତ ନାହାନ୍ତି ।

ରୁନି : ହଁ, ଅଜା । କେହି ତ ଏଠି ନାହାନ୍ତି ? ତମେ ସ୍ୱପ୍ନ ଦେଖିନା' ତ ?

ଜଗନ୍ନାଥ : 'ସ୍ୱପ୍ନ'.....। ନା' ତା' କେମିତି ହବ ? କ'ଣ ତା' ନାଁଟା ତ..... ନା'..... ମନେପଡୁନି । ଏଇ ସାଙ୍ଗେ ସାଙ୍ଗେ ଚାଲିଗଲା ।

ମିତା : କିଏ..... କାହାକଥା କହୁଛ ?

ଜଗନ୍ନାଥ : ସେଇ ଝିଅଟା.....। ନାଁ'ଟା' ମନେ ପଡୁନି ।

ରୁନି : ଅଜା, କବାଟ ତ ବନ୍ଦ ଅଛି । ଘର ଭିତରକୁ କେମିତି ଜଣେ ଆସିବ ? ତମେ ନିଶ୍ଚୟ ସ୍ୱପ୍ନ ଦେଖୁଥିଲ ।

ମିତା : ସିଏ ଠିକ୍ କଥା କହୁଛି ।

ଜଗନ୍ନାଥ : ମୁଁ କ'ଣ ମିଛ କହୁଛି ? ମୁଁ ନିଜେ ତାକୁ ଦେଖିଛି.....।

[ ଦରଜାରେ ଠକ୍ ଠକ୍ ଆୱାଜ ଶୁଭିଛି । ]

ଜଗନ୍ନାଥ : କ'ଣ, ମୁଁ ମିଛ କହୁଥିଲି ? ସେ ଦରଜା ପାଖରେ ଅଛି । ଯାଉନି-ନିଶ୍ଚୟ ଥିବ ।

[ ରୁନି ଯାଉଥିଲା ଦରଜା ଖୋଲିବାକୁ । ବାଧା ଦେଉଛନ୍ତି ମିତା । ]

ମିତା : ତୁ ଯା' ନା..... ମା.....। ତମେ ଯାଅ, ଖୋଲ ।

ଜଗନ୍ନାଥ : ମୁଁ କେବେ ସେ ଦରଜା ପାଖକୁ ଯିବିନି । ସିଏ ମତେ ଯାହା ହଇରାଣ କରିଛିନା'.....

[ ଦରଜାରେ ଆୱାଜ୍ ବଢ଼ିଛି । ]

ବଳରାମ : (ବାହାରପଟୁଥାଇ) ଆରେ ଜଗା..... ଦରଜା ଖୋଲ.....। ମୁଁ ବଳିଆ..... ବଳିଆ ଭାଇ ଡାକୁଛି ।

ମିତା : ଏଡ଼େ ଡରକୁଳା ଲୋକ । ବଳିଆ ଭାଇ ଡାକୁଛନ୍ତି ।

[ ଦରଜା ଫିଟାଉଛନ୍ତି ମିତା । ଭିତରକୁ ଆସିଛନ୍ତି ବଳରାମ । ]

ବଳରାମ : କିରେ ଜଗା, ବଡ଼ି ଭୋରୁ କାହିଁକି ପାଟି କରୁଥିଲୁ ? ମୁଁ Morning walkରେ ଯାଉଥିଲି । କ'ଣ ହେଇଛି ?

ଜଗନ୍ନାଥ : ଆଜ୍ଞା ଭାଇ, ବାହାରେ କାହାକୁ ଭେଟିଲ କି ? ମାନେ ଆମ ଦରଜା ପାଖରେ.....। ସାଙ୍ଗେ ସଙ୍ଗେ ସେ ଯାଇଛି.....।

ବଳରାମ : ଦରଜା ତ ଭିତରପଟୁ ବନ୍ଦ । କିଏ କେମିତି ବାହାରକୁ ଆସିବ ? ତା'ପରେ ଏବେ ତ ଦରଜା ଖୋଲାହେଉଛି.....।

ମିତା : ସେଇ କଥା ଭାଇ ତାଙ୍କୁ ପଚାରନ୍ତୁ ।

ଜଗନ୍ନାଥ : ମୁଁ ଚାହେଲେ କ'ଣ ମିଛ କହୁଛି ? ଯାହାସବୁ ଏଠି ଘଟିଗଲା..... ମତେ କହୁଛି ସିଏ ଆମର ଚତୁର୍ଥ ସନ୍ତାନ ।

ରୁନି : ଅଜା, ତମେ ନିଶ୍ଚୟ ମଜାଳିଆ ସ୍ୱପ୍ନଟାଏ ଦେଖିଛ !

ଜଗନ୍ନାଥ : ହଁ, ଥଟ୍ଟା କରିବନି କାହିଁକି ! ସମସ୍ତେ ମିଳିମିଶି ମଜା ଉଡ଼ାଅ । ଆଜି ନ ହେଲେ କାଲି ତ ସେ ଝିଅ ସାଙ୍ଗେ କୋଉଠି ନା କୋଉଠି ଭେଟ ହବ । ସେତେବେଳେ ଦେଖିବ..... ଦେଖିବ ତମମାନଙ୍କୁ କେମିତି ସେ ପାଣି ପେଉଛି.....।

ବଳରାମ : ଜଗା, ତୁ ବୋଧେ ରାତିରେ ଶୋଇନୁ । ସେଇଥିପାଇଁ.....

ମିତା : ହଁ, ସେ ରାତିରୁ କେତେବେଳେ ଉଠି ପଳେଇ ଆସିଛନ୍ତି ।

ବଳରାମ : ଏଇଟା ବି ଗୋଟେ ପ୍ରକାର ବେମାରି । ନିଦ ବାଉଳାରେ ଉଠି ବାହାରକୁ ଚାଲିଆସିବା । ସେତେବେଳେ ମୁଣ୍ଡ କିଛି କାମ କରେନା.....। ଜଗାର ସେଇଆ ହେଇଛି ।

ଜଗନ୍ନାଥ : କେମିତି ଯେ ତମମାନଙ୍କୁ ବୁଝେଇବି.....। ଆରେ କେହି ଜଣେ ହେଲେ ତ ମୋ କଥାକୁ ବିଶ୍ୱାସକର ।

ବଳରାମ : ଜଗା, ଯା'..... ଆଉ ଘଡ଼ିଏ ଶୋଇପଡ଼ । ସବୁ ଠିକ୍ ହେଇଯିବ । ନଚେତ୍ ଆ'..... ମୋ ସାଙ୍ଗରେ । ବି'ଘେରା ମାରି ଆସିବୁ । ଆଜି ଆଉ ଦି'ଜଣଙ୍କ ସାଙ୍ଗେ ଭେଟ କରେଇ ଦେବି ।

ରୁନି : ଅଜା, ତମେ କିଛି ସମୟ ଶୋଇପଡ଼ । ସବୁ ଠିକ୍ ହେଇଯିବ ।

ମିତା : ହଁ, ଚାଲିଲ ତମେ ।

ବଳରାମ : ଚାହିଁକୁ କ'ଣ..... ଯାଆ.....

ରୁନି : ଅଜା, ତମେ ଆସିଲ.....।

[ ରୁନି ଟାଣି ଟାଣି ଘରଭିତରକୁ ନେଇଯାଉଛି ଜଗନ୍ନାଥକୁ । ]

ମିତା : ମୁଁ ବୁଝିପାରୁନି, ତାଙ୍କର ଏମିତି କାହିଁକି ହଉଛି । ସଦାବେଳେ ଅନ୍ୟମନସ୍କ ରହୁଛନ୍ତି । ଭାଇ, ଏଇ କିଛି ସମୟପୂର୍ବରୁ ସିଏ ଆମକୁ ନାକେଦମ୍ କଲେଣି ।

ବଳରାମ : ପ୍ରଥମେ ତା' ଡିପ୍ରେସନର କାରଣଟା କ'ଣ ବୁଝିବାକୁ ଚେଷ୍ଟାକର । ଗୋଟେ ଭଲ ଡାକ୍ତର ଦେଖଉନ.....। କିଛି ନ ହେଲେ ଆମ ଡାକ୍ତର ତ ଅଛି ।

ମିତା : ହଁ । ଏମିତି ଦି' ତିନିଥର ହେଲାଣି । ରାତିରେ ତାଙ୍କୁ ଭଲ ନିଦ ବି ହଉନି ।

ବଳରାମ : ଇଏ ସବୁ ହଉଛି ତାରିଫଳ । ବେଶିଗୁଡ଼ାଏ ଚିନ୍ତାକଲେ, ଏମିତି ହବ । ଭଲ ସାଇକିଆଟ୍ରିକ୍ ଦେଖେଇଲେ, ସିଏ ଠିକ୍ କହିପାରିବ ।

ମିତା : ସିଏ କ'ଣ ମୋ କଥା ଶୁଣିବେ । ଆପଣ କହିଲେ ହୁଏତ, ସେ ରାଜି ହେଇପାରନ୍ତି ।

ବଳରାମ : ଠିକ୍ ଅଛି । ଆଜି ସନ୍ଧ୍ୟାରେ ତାକୁ ଡକ୍ଟର ଦାସଙ୍କ ପାଖକୁ ନେଇଯିବି । ହଉ..... ଯାଉଛି..... ଦି' ଘେରା ନ ମାରିଲେ, ମତେ ଭଲ ଲାଗିବନି.....।

[ ଘରୁ ବାହାରି ଯାଉଥିଲେ ବଳରାମ । ତାଙ୍କୁ ଚାହିଁ ରହିଥିଲେ ମିତା । ମଞ୍ଚ ଧୀରେ ଧୀରେ ଅନ୍ଧକାର ହୋଇ ଆସିଛି । ]

## ପଞ୍ଚମ ଦୃଶ୍ୟ

<u>ଚରିତ୍ର</u>

* ଡାକ୍ତର
* ବଳରାମ
* ରାମୁ
* ଜଗନ୍ନାଥ

ଡାକ୍ତରଙ୍କ ସେହି ପୂର୍ବ ପ୍ରକୋଷ୍ଠ ।

[ ସମୟ ଦିବସ । ଡାକ୍ତର ବଳରାମଙ୍କ ସହିତ କଥାବାର୍ତ୍ତା କରୁଥିଲେ । କିଛିଗୋଟାଏ ଆଲୋଚନା ଜାରି ରହିଥିଲା । ]

ଡାକ୍ତର : ଆପଣ ଏ ସବୁ କେମିତି ଜାଣିଲେ ?

ବଳରାମ : ମୁଁ morning workରେ ଯାଉଥିଲି । ଜଗନ୍ନାଥ ଘରେ ପାଟିଶୁଭିଲା । ଜଗନ୍ନାଥର ଅଭିଯୋଗ ହେଲା, ଗୋଟାଏ ଝିଅ ତାକୁ ଧମକ ଦେଇ ଯାଇଛି । କହୁଛି, ସିଏ ତାଙ୍କ ଝିଅ । ମାନେ ଫୋର୍ଥ ଚାଇଲ୍ଡ.....।

ଡାକ୍ତର : ଇଏତ ସିନେମା ଷ୍ଟୋରି ଭଳି ଲାଗୁଛି । ଆଜିକାଲି ଯୁଗ ଯାହାହେଲାଣି, ଏଠି ସବୁ କିଛି ସମ୍ଭବ । ଜଗନ୍ନାଥ ବି ଅନେକ ଦିନ ହେଲା ଆସିନାହାଡି । ଯାହା ଆସିଥିଲେ ସାନଝିଅର ଡେଲିଭରି ବେଳେ । କ'ଣ ହେଉଛି ତାଙ୍କର ?

ବଳରାମ : ବିଚରାଟା ନେଭେସନ୍‌ରେ ରହୁଛି । ପୁଅଟେ ଚାହିଁ ଚାହିଁ ତିନିଟା ଝିଅ ଆସିଗଲେ । ସମସ୍ତେ ବାହାରେ । ତା'ପାଖରେ କେହି ନାହାନ୍ତି । ତା' ସ୍ତ୍ରୀଟା ଭାରି ଭାଙ୍ଗିପଡ଼ିଛି ।

ଡାକ୍ତର : ଏଇଟା ତ ନିତିଦିନିଆ କଥା । ଏତେ ଚିନ୍ତାକରି ଲାଭ କ'ଣ ? ଯାହାର କେହି ପିଲା ନାହାନ୍ତି, ତା' ବୋଲି ସେ ସଂସାର ଛାଡ଼ି ଚାଲିଯିବ । ଆରେ ମତେ ଦେଖ.....

ବଳରାମ : ଆପଣଙ୍କ କଥା ଚଳିଯିବ । ଆପଣ ନିଜକୁ ଚବିଶି ଘଣ୍ଟା ଏନ୍‌ଗେଜ ରଖୁଛନ୍ତି । ହେଲେ ସିଏ ? ରିଟାୟାଡ଼ ପରେ, ପୂରାପୂରି ଏକୁଟିଆ ହୋଇଯାଇଛି । ବାହାରକୁ ବୁଲାବୁଲି କରିବାକୁ ବି ଯାଉନି ।

ଡାକ୍ତର : ଦିନେ ନା ଦିନେ ସମସ୍ତଙ୍କୁ ରିଟାୟାଡ଼ ହବାକୁ ପଡ଼ିବ । ମେ ସବୁକୁ ଲାଇଟ୍‌ମୁଡ୍‌ରେ ଗ୍ରହଣ କରିନେବା ଭଲ । ଭଲ ହୁଅନ୍ତା, ସିଏ ଯଦି କୋଉଠି ଆଉଥରେ ଏନଗେଜ୍‌ଡ ହୋଇଯାଆନ୍ତେ ।

ବଳରାମ : ନା'..... । ସେ ମାନିବନି । ତାକୁ ପ୍ରପୋଜାଲ ଦେଇଥିଲି । ସିଧା ମନା କରିଦେଲା । କହିଲା, "୩୫ ବର୍ଷ ଚାକିରି କଲି । ଆଉ କେତେ ଖଟିବି ? ବାକିତକ ଜୀବନ ଖୁସିରେ କଟେଇଦେବି ।"

ଡାକ୍ତର : ଖୁସି ମିଳିଲେ ତ ?

ବଳରାମ : କହିଲି, ସବୁଝିଅଙ୍କ ଘରେ ମାସେ କି ପନ୍ଦର ଦିନ ବୁଲିଆ । ମନଟା ଭଲ ଲାଗିବ । ମୋ କଥା ଶୁଣିଲାନି । ସିଏ ଯାହା ବୁଝିଥିବ ସେଇଆ ।

ଡାକ୍ତର : ଏକୁଟିଆ ରହିଲେ ନାନା ଚିନ୍ତା ମୁଣ୍ଡକୁ ଜୁଟିବ । ଏଣୁ ରିଟାୟାରମେଣ୍ଟ ପରବର୍ତ୍ତୀ ସମୟଟା ଭାବିଚିନ୍ତି କଟେଇବା ଉଚିତ । ହଁ, ମୋ ପାଖକୁ ଆସିଲେ—

ବଳରାମ : ମୁଁ ତାକୁ ପଠେଇଦେବି । ତାକୁ ଟିକିଏ ବୁଝେଇଦେବେ । ଜଗନ୍ନାଥଟା ଭାରି ମୁଡ଼ି (Moody) । ଆମେ ଏକା ଗାଁ'ର । ଏକା ଅଫିସ୍‌ରେ ଚାକିରି କଲୁ । ଆଗ ମୁଁ, ରିଟାୟାଡ ହେଲି । ପରେ ସିଏ..... ହେଲେ ଆମ ସମ୍ପର୍କ ପୂର୍ବଭଳି ରହିଛି ।

ଡାକ୍ତର : କାମଧନ୍ଦା ଭିତରେ ନିଜକୁ ବୁଡ଼େଇ ରଖିଲେ ବାଜେଚିନ୍ତା ମୁଣ୍ଡକୁ ଧରିବନି । କିଛି ନ ହେଲେ, ବର୍ଷକୁ ଥରେ ଅନ୍ତତଃ ବାହାରେ ବୁଲାବୁଲି କରି ଆସିବା ଉଚିତ ।

ବଳରାମ : ସେ ଝିଅଟା ତାକୁ ନାକେଦମ୍ କଲାଣି । ଚିହ୍ନାନାହିଁ ଜଣାନାହିଁ । ଜବରଦସ୍ତି କହୁଛି ମୁଁ ତମ ଝିଅ ।

[ କଥା ମଝିରେ ଆସିଛି ରାମୁ । ]

ରାମୁ : ସାର୍, ସେଇଝିଅଟା ନୁହେଁ ତ, ଯିଏ ଏଠିକି ଆସିଥିଲା ବୋଲି ଆପଣ କହୁଥିଲେ.....

ବଳରାମ : ମାନେ, ସିଏ ଏ ଯାଗାକୁ ବି ଆସିଥିଲା ?

ରାମୁ : ହଁ, ଆଜ୍ଞା, ସାର୍‌କୁ ସେଦିନ ଭାରି ହଇରାଣରେ ପକେଇଛି । ନାଁ'ଟା କ'ଣ ତ.....। ହଁ, ମନେପଡ଼ିଲା..... ଅନାମିକା ।

ବଳରାମ : ଆଶ୍ଚର୍ଯ୍ୟ ! ଆପଣ ପୋଲିସ୍‌କୁ ଜଣେଇ ନାହାନ୍ତି ଏଯାଏ ? ଏ ସବୁ କାମରେ ଢିଲା ମାରିବା ଠିକ୍ ନୁହେଁ ।

ଡାକ୍ତର : ଅଯଥାରେ ପୁଣି ଗୋଟାଏ ଝାମେଲାକୁ ଡାକି ଆଣିବାକୁ ମୋର ଇଚ୍ଛାହେଲାନି ।

ରାମୁ : ସେ ଝିଅଟାର କି ରୋକ୍‌ଠୋକ୍ କଥାବାର୍ତ୍ତା !

ବଳରାମ : ଝିଅଟି ଦେଖିବାକୁ କେମିତି ?

ରାମୁ : ମୁଁ ଦେଖିନି, ଆଜ୍ଞା । ସାର୍‌ଙ୍କ ଠାରୁ ଯାହା ଶୁଣିଛି ।

ଡାକ୍ତର : ପିଲାଟା ଦେଖିବାକୁ ମନ୍ଦ ନୁହେଁ । କମାଣ୍ଡିଙ୍ଗ ଭଏସ୍ । ଏମିତି ଯୁକ୍ତିକଲା ମୋ ସାଙ୍ଗରେ, ମୁଁ ଭାବିଲି ବୋଧହୁଏ ସିବିଆଇରୁ ଆସିଛି ।

ରାମୁ : ଆଜ୍ଞା, ସତକହୁଛି । ସାର୍ ସେଦିନ ଏମିତି ହଡ଼ବଡ଼େଇଗଲେ ଯେ–

ଡାକ୍ତର : ତୁ ତୋ କାମକର, ରାମୁ, ଏଥିରେ ମୁଣ୍ଡ ଖେଳାନା ।

ବଳରାମ : ମତେ ଟିକେ ଜଗାକୁ ପଚାରିବାକୁ ପଡ଼ିବ । ସେ ଝିଅଟା ନାଁ ଅନାମିକା କି ଆଉ କ'ଣ ।

ରାମୁ : ସାର୍, ଚା' ମଗେଇବି ?

ବଳରାମ : ନା' କିଛି ଦରକାର ନାହିଁ ।

ଡାକ୍ତର : ତୁ ରେଜିଷ୍ଟ୍ରେସନ କାମ ଠିକ୍‌କର । ପଇସା ବ୍ୟାଙ୍କରେ ଡିପୋଜିଟ୍ କରିଦେ ।

ରାମୁ : ସାଙ୍ଗେ ସାଙ୍ଗେ କରିଦଉଛି, ସାର୍ ।

[ ଚାଲିଯାଉଛି ରାମୁ । ଭିତରକୁ ଆସିଛନ୍ତି ଜଗନ୍ନାଥ । ଚେହେରା ପୂରାପୂରି ବିଷର୍ଣ୍ଣ । ]

ବଳରାମ : ହେଇତ, ଜଗା ଆସିଲାଣି ।

ଜଗନ୍ନାଥ : ନମସ୍କାର, ଡାକ୍ତରବାବୁ ।

ଡାକ୍ତର : କ'ଣ, ଦେହ ଭଲ ନାହିଁକି ?

ଜଗନ୍ନାଥ : ଏଇ କେତେଦିନ ହବ, ମତେ ଆଦୌ ଭୋକ ଲାଗୁନି । ରାତିରେ ନିଦ ବି ହଉନି । ମିସେସ୍ କହିଲା ଆପଣଙ୍କୁ ଦେଖା କରିବାକୁ । ସେଇଥିଲାଗି ଆସିଛି । ଭାଇନା, ଆପଣ ?

ବଳରାମ : ଜଗା, ସେ ଝିଅଟା ନାଁ କ'ଣ କହିଲୁ.....

ଜଗନ୍ନାଥ : ତା' ନାଁଟା କ'ଣ ତ–

ଡାକ୍ତର : 'ଅନାମିକା' ନୁହଁ ତ ?

ଜଗନ୍ନାଥ : 'ହଁ'.....। ଆପଣ କେମିତି ଜାଣିଲେ ?

[ ବିସ୍ମୟରେ ଚାହିଁ ରହିଲେ ଡାକ୍ତରଙ୍କୁ । ]

ବଳରାମ : ଡାକ୍ତରବାବୁ, ସେଇ ଏକା ଝିଅ । ସିଏ ଏକ ସାଥିରେ ଦୁଇଜଣଙ୍କୁ blackmailing କରିବାକୁ ଚାହୁଁଛି ।

ଜଗନ୍ନାଥ : ଜବରଦସ୍ତି କହୁଛି, ମୁଁ ତମ ଝିଅ । ସେଦିନ ମତେ କି ଯେ ହଇରାଣ କରିଛି !

ଡାକ୍ତର : ସେଇଝିଅ ମୋ ପାଖକୁ ଆସିଥିଲା । ମତେ ଧମକ ଦେଇଯାଇଛି । ହେଲେ ମୁଁ ତା' ଧମକରେ ଡରିଯିବା ଲୋକ ନୁହଁ ।

ବଳରାମ : ପ୍ରଶ୍ନ ଏଠି ଡରିବା ନ ଡରିବାର ନୁହେଁ ଡାକ୍ତରବାବୁ । ଆପଣମାନେ ଏଯାଏ ଚୁପ୍‌ଚାପ୍ ବସିଛନ୍ତି କାହିଁକି ? ସାଙ୍ଗେ ସାଙ୍ଗେ ପୋଲିସ୍‌ରେ ଧରେଇଦବା ଉଚିତ୍ ।

ଡାକ୍ତର : ଝିଅଟା ବୋଲି ଦୟାକରି ଛାଡ଼ିଦେଇଛି । ଏଣିକି ଆଉ ନୁହେଁ । ଏଥର ସେ ଆସୁ । ମୋର ଅସଲରୂପ ଦେଖିବ । ମୁଁ ଜାଣି ନ ଥିଲି, ସିଏ ଜଗନ୍ନାଥଙ୍କୁ ବି ଧମକ୍ ଦେଇଛି ବୋଲି.....!

ବଳରାମ : ସୁଯୋଗ ବାରବାର ଆସେନି । ଥରେ ହାତଛଡ଼ା କଲେ ପସ୍ତେଇବାକୁ ପଡ଼େ । ଅନାମିକା ଆଉ କେବେ ଆସିବନି ।

ଜଗନ୍ନାଥ : ହେଲେ ତା'ର ଉଦ୍ଦେଶ୍ୟଟା କ'ଣ, ଠିକ୍ ଜାଣିହଉନି ।

ଡାକ୍ତର : ଆମ ସମସ୍ତଙ୍କୁ ବ୍ଲାକମେଲିଙ୍ଗ୍ କରି ଟଙ୍କା ଝଡ଼େଇବା ।

ବଳରାମ : ଜଗା ଆଉ ଆପଣଙ୍କ ଉପରେ କାହିଁକି ତା'ର ରାଗ ? କଥାଟା କେମିତି ଗୋଳମାଳିଆ ଲାଗୁଛି ।

ଜଗନ୍ନାଥ : ଚିହ୍ନା ନାହିଁ ପରିଚୟ ନାହିଁ । ହଠାତ୍ ଆସି ଡିମାଣ୍ଡକରୁଛି, ମୁଁ ତମ ଝିଅ । Fourth daughter । କେମିତି ସାହସ କରି ସେ ଏକଥା କହିପାରୁଛି ।

ଡାକ୍ତର : ନିଶ୍ଚିତ ଭାବେ କୋଉଠୁ ଧୋକ୍କା ଖାଇଥିବ କିମ୍ବା (Destitute) ଡେଷ୍ଟିଚିଉଟ୍ ହୋଇଥିବ ।

ବଳରାମ : ତା'ବୋଲି ଅନଧିକାର ଚର୍ଚ୍ଚା କରିବସିବ । ଏ ଦେଶରୁ କ'ଣ ଆଇନ୍‌କାନୁନ୍ ଉଠିଗଲା । ସେ ଯାଗାରେ ମୁଁ ଯଦି ଥା'ନ୍ତି ନା', ଆଗ ତା' ହାତଗୋଡ଼ ଦି'ଟା ବାନ୍ଧି ପକେଇଥା'ନ୍ତି ।

ଜଗନ୍ନାଥ : ତା' କଥାଗୁଡ଼ାକ ଯେମିତି ଗୋଟାଏ ଗୋଟାଏ ବୁଲେଟ୍ । ଚେଷ୍ଟା କରି ମଧ ମୁଁ ତା'ର କିଛି କରିପାରିଲି ନାହିଁ ।

ଡାକ୍ତର : ଏଇଥରଟା ଆସୁ । ଜାଣିବ, ମୁଁ କ'ଣ କରିପାରେ ।

ବଳରାମ : ଜଗା, ତା' ଆସିବାର ସୂଚନା ପାଇଲେ ମତେ ଟିକେ ରିଙ୍ଗ୍ କରିବୁ । ହଁ, ଡାକ୍ତରବାବୁ, ଆପଣ ବି ।

ଡାକ୍ତର : ନିଶ୍ଚୟ ।

ବଳରାମ : ମୁଁ ତା'ହେଲେ ଆସୁଛି ଡାକ୍ତରବାବୁ । ଜଗା, ତୁ ମଧ ମୁଣ୍ଡରୁ ସେ ଭୂତଟାକୁ କାଢ଼ିଦେ । ତୋ ଦେହ ଭଲ ହେଇଯିବ । ରାତିରେ ଠିକ୍ ନିଦ ହବ । ଆଉ ମେଡିସିନ୍ ଦରକାର ହବନି ।

ଜଗନ୍ନାଥ : ଆମେ ତା'ହେଲେ ଆସୁଛୁ, ଡାକ୍ତରବାବୁ ।

[ ଡାକ୍ତରଙ୍କୁ ହାତଯୋଡ଼ି ନମସ୍କାର କରୁଥିଲେ ଜଗନ୍ନାଥ ଏବଂ ବଳରାମ । ମଞ୍ଚ ଧୀରେ ଧୀରେ ଅନ୍ଧକାର ହୋଇ ଆସିଛି । ]

# ଷଷ୍ଠ ଦୃଶ୍ୟ

<u>ଚରିତ୍ର</u>

- ରୁନି
- ମିତା
- ବିଭୁ
- ଜଗନ୍ନାଥ

[ ଜଗନ୍ନାଥଙ୍କ ଡ୍ରଇଂରୁମ୍ । ସମୟ ରାତି । ଚିନ୍ତିତ ଅବସ୍ଥାରେ ବସିଥିଲେ ମିତା । ଭିତରୁ ଆସିଛି ରୁନି । ]

ରୁନି : ଆଈ, ମୁଁ ଚାଲିଯାଉଛି ବୋଲି ତମେ ମନୋଦୁଃଖ କରୁଛ । ମୁଁ ବାପାଙ୍କୁ ମନାକରିଦେବି ।

ମିତା : ନା'....., ତୋ ମା' ଭାରି ବ୍ୟସ୍ତହେଲାଣି । ତୋ ପାଠପଢ଼ା ଅଛି । ଆମେ କ'ଣ ତୋର ଏତେଟା ଯତ୍ନ ନେଇପାରିବୁ ।

ରୁନି : ଯେଉଠି ରହିଲେ ବି ପାଠ ପଢ଼ିହେବ ।

[ ଭିତରୁ ଆସିଛନ୍ତି ବିଭୁପ୍ରସାଦ । ]

ବିଭୁ : ପାଗେଳିଟା, କ'ଣ ଆଈକୁ ପାଠ ପଢ଼ଉଛୁ ।

ରୁନି : ବାବା, ମୁଁ ତମ ସାଙ୍ଗରେ ଯାଉଛି ବୋଲି ଅଜା ଆଈଙ୍କର ଭାରି ମନୋଦୁଃଖ ।

ବିଭୁ : ତୁ ଏ କେତେଦିନ ଭିତରେ ନିଶ୍ଚୟ କିଛିଟା ମାୟା ମମତାର ଡୋରି ଲଗେଇ ଦେଇଥିବୁ।

ମିତା ; ନା' ବିଭୁ, ପିଲାଟା ବାପା ମା'ଙ୍କ ପାଖରେ ରହିଲେ ଭଲ। ଅବନ୍ତୀ ମନୋଦୁଃଖ କରୁଛି।

ବିଭୁ : ବୋଉ, ମୁଁ ଆଉ ଗୋଟାଏ କଥା ଭାବୁଛି। ଏ ଘର ଜାଗାବାଡ଼ି ବିକିଦେଲେ କେମିତି ହୁଅନ୍ତା ! ତମେ ଦି'ଜଣ ଆମ ପାଖେ ରହିଯାନ୍ତ !

ଗୁନି ; ଆଈ, ଭାରି ବଢ଼ିଆ ହବ। ମତେ ସବୁଦିନ ଗପ ଶୁଣାଇବ। ଅଜା ବି ପାଠ ପଢ଼େଇବେ। ଆଉ ଟିଉସନ୍ ସାର ଦରକାର ନାହିଁ।

ବିଭୁ : ହଁ, ତମେ ଦି'ଜଣ ବି ଆଉ ଏକଲା ରହିବା ଉଚିତ ନୁହେଁ। କେତେବେଳେ କୋଉକଥା। ବୟସ ବି ହୋଇଗଲାଣି।

ମିତା : ନା' ବିଭୁ ନା'..... ! ତମ ଶ୍ୱଶୁର ଆଦୌ ରାଜିହେବେନି। ଏ ସମ୍ପତ୍ତି ବିକିବା କଥା ତମେ ଆଦୌ ଉଠାଅନି। ସିଏ ମନୋଦୁଃଖ କରିବେ।

ବିଭୁ : ଭଲ ମନ୍ଦ ହେଲେ କିଏ ଏଠି ଆସି ରହିବ ! ସମସ୍ତଙ୍କର ସଂସାର ଅଛି। ଦିନେ ଅଧେ କିଏ ଚଳେଇଦବ। ମାସେ ଦି'ମାସ କିଏ ରହିବ ! ଭବିଷ୍ୟତ କଥା ଥରେ ଭାବନ୍ତୁ।

ମିତା : ବାସନ୍ତୀ ମଧ୍ୟ ସେଇଆ ଚାହୁଁଛି। ଏ ଘରଦ୍ୱାର ବିକି ଦେଇ ଆମେ ତା' ପାଖରେ ରହୁ।

ବିଭୁ : ଅପା କିଛି ଭୁଲ୍ କହୁନାହାନ୍ତି। ଆମମାନଙ୍କ ପାଖରେ ରହିଲେ। ତମେ ଦି'ଜଣେ ଅନ୍ତତଃ ପୂରାପୂରି ନିରାପଦ।

ମିତା : ହେଲେ ମିନତୀ ଚାହେଁନି, ଆମେ ଜାଗାବାଡ଼ି ବିକି ଅନ୍ୟ ଉପରେ ନିର୍ଭର କରୁ ବୋଲି।

ବିଲୁ : ଝିଅ ଜ୍ୱାଇଁମାନେ କ'ଣ ଏତେ ପର ? ସେମାନେ ଆପଣମାନଙ୍କ ଯତ୍ନ ନେଇପାରିବେନି ?

ରୁନି : ଆଈ, ତମେ ଆମ ଘରକୁ ଚାଲନା'.....। ମୁଁ ଅଜାଙ୍କୁ ନିଶ୍ଚୟ ରାଜି କରେଇଦେବି ।

ମିତା : ତୋ ଅଜାଙ୍କୁ ତୁ ଜାଣିନୁ ଲୋ ମା'.....। ସିଏ ଯାହା ବୁଝିଥିବେ ସେଇଆ । ସିଏ ଭାଙ୍ଗି ଯିବେ ପଛେ ନଇଁବେ ନାହିଁ ।

[ ଗାଡ଼ିର ହର୍ଣ୍ଣ ଶୁଭିଛି । ସଚେତନ ହୋଇଛନ୍ତି ବିଲୁ । ]

ବିଲୁ : ଡ୍ରାଇଭର ବ୍ୟସ୍ତ ହେଲାଣି । ତା'ର ଆଉ ଗୋଟାଏ ଟ୍ରିପ୍ ଅଛି । ରୁନି, ତୋ ଜିନିଷପତ୍ର ସବୁ ଗାଡ଼ିରେ ରହିଛି ତ ?

ରୁନି : ହଁ, ସବୁ ରଖିଦେଇଛି ।

ମିତା : ଯା'..... ମା.....। ଆମେ ନିଶ୍ଚୟ ଯିବୁ ତୋ ପାଖକୁ ।

ରୁନି : ମୋ ଆଈ ଭଳି କିଏ ହବ !

[ ଗେଲ କରିଛି ରୁନି ମିତାଙ୍କୁ । ]

ବିଲୁ : ଚାଲେ ଯିବା । ହଁ, ବୋଉ । ବାପାଙ୍କୁ ପଚାରନ୍ତୁ । ତେଣିକି ସିଏ ଯାହା ନିଷ୍ପତ୍ତି ନେବେ । ମୁଁ ସବୁ ଦିଗରୁ ବିଚାର କରି ପ୍ରସ୍ତାବ ଦେଇଛି ।

[ ପାଦ ଛୁଇଁ ନମସ୍କାର କରିଛି ବିଲୁ । ରୁନିର ହାତ ଧରି ଆଗେଇଛନ୍ତି । ସ୍ଥାଣୁଭଳି ଗୋଟିଏ ଯାଗାରେ ଛିଡ଼ାହୋଇ ହାତ ହଲେଇଛନ୍ତି ମିତା । ଗାଡ଼ି ଚାଲିଯାଇଛି । ତଥାପି ତାଙ୍କ ହାତ ହଲୁଛି । ଆସିଛନ୍ତି ଜଗନ୍ନାଥ ବାହାରୁ । ]

ଜଗନ୍ନାଥ : ବିଲୁ, ରୁନି ଚାଲିଗଲେ ବୋଧେ !

[ ଅନ୍ୟମନସ୍କ ମିତାକୁ ଲକ୍ଷ୍ୟ କରିଛନ୍ତି । ମିତା କୌଣସି କଥା ଶୁଣିବା ଅବସ୍ଥାରେ ନାହାନ୍ତି । ]

ଜଗନ୍ନାଥ : 'ମିତା'.....

ମିତା : ଏଁ..... କ'ଣ !

[ ଚମକି ପଡ଼ିଛନ୍ତି ମିତା । ]

ଜଗନ୍ନାଥ : କିଏ କହୁଥିଲା ଛୁଆଟା ସାଙ୍ଗରେ ଏତେ ମାୟାମମତା ବଢ଼େଇବାଲାଗି !

ମିତା : ପୁଅଟିଏ ଥିଲେ ଆମେ ବି ନାତିନାତୁଣୀ ଖେଳାଇଥା'ନ୍ତେ ।

ଜଗନ୍ନାଥ : କେତେଥର କହିଛି, ଏ ବାଜେକଥାଗୁଡ଼ାକ ମୁଣ୍ଡରେ ପୂରାଅନି । ସେଗୁଡ଼ିକ ଘାଣ୍ଟିବସିଲେ କ'ଣ ଆମ ଅତୀତ ଫେରିଆସିବ । ନିଜ ଭିତରେ ବଂଚିବାକୁ ଚେଷ୍ଟାକର । ଅନ୍ୟର ହାତଟେକା ଦାନ ଉପରେ କଦାପି ନୁହେଁ । ତମ ପାଇଁ ମୁଁ, ଆଉ ମୋ ପାଇଁ ତମେ..... ! ବାସ୍.....

ମିତା : ମୁଁ ଆଉ ପାରୁନି.....।

ଜଗନ୍ନାଥ : ମୁଁ ଅଛି । ଭୟ କାହିଁକି ! ଏ ମିତା..... ଆମେ ବିହେଁ ପରା ଜନମ ଜନମର ସାଥୀ । ଏ ଦୁନିଆରେ ଯେଉଁମାନଙ୍କର ଆଦୌ ପିଲାନାହାନ୍ତି, ସେମାନେ ତ ପୁଣି ବଂଚିଛନ୍ତି । କିଛି ଫରକ୍ ପଡ଼ିବନି ।

[ ମିତା ଚାହିଁ ରହିଛନ୍ତି ଜଗନ୍ନାଥଙ୍କ ମୁହଁକୁ । ]

ମିତା : ଭଗବାନ କରନ୍ତୁ । ମୁଁ ତମ ଆଗରେ ଚାଲିଯାଏ ।

[ କରୁଣ ହୋଇ ଉଠିଛି ପରିବେଶ । ]

ଜଗନ୍ନାଥ : ଯେ, ଏତେ ସ୍ୱାର୍ଥପର ! ମୋ କଥା ଥରେ ଭାବ । ମୁଁ ପୁଣି କାହା ଆଶାରେ ବଂଚିରହିବି । ଭାଂଗିପଡ଼ିଲେ କିଏ ମତେ ଆଉଁସି ଦେବ ! ବରଂ ଈଶ୍ୱରଙ୍କୁ ପ୍ରାର୍ଥନା କର । ଆମେ ଦିହେଁ ହାତ ଧରାଧରି ହେଇ ଚାଲିଯିବା । ସିଏ ଆମକୁ ଆଣିଛନ୍ତି । ସିଏ ବାଟ ବଢ଼େଇ ନେବେ ।

[ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଛନ୍ତି । 'ଏକା ତୋ ଭକତ ଜୀବନ' ଗୀତର ପଦଟିଏ ଭାସିଆସିଛି । ଦୁହେଁ ନିଶ୍ଚଳ ହୋଇ ଭାବ ମୁଦ୍ରାରେ ରହିଥିଲେ । ଧୀରେ ଧୀରେ ମଞ୍ଚ ଅନ୍ଧାର ହୋଇଆସିଛି । ]

# ସପ୍ତମ ଦୃଶ୍ୟ

ଚରିତ୍ର

* ଅନାମିକା
* ମିତା
* ଜଗନ୍ନାଥ

ରାତିର ଶେଷ ପ୍ରହର.....

[ ଜଗନ୍ନାଥଙ୍କ ଡ୍ରଇଂରୁମ୍ । ଝାପ୍‌ସା ଅନ୍ଧାର । ଘର ଭିତରେ ବିଚରଣ କରୁଥିଲା ଅନାମିକା । ମିତାଙ୍କୁ ଆସିବାର ଦେଖି ଲୁଚିଯାଇଛି ଚେୟାର ପଛପଟେ । ଭିତରୁ ଆସିଛନ୍ତି ମିତା । ବସିଛନ୍ତି ଚେୟାର ଉପରେ । ମନ ଭିତରେ ଚିନ୍ତା । ପଛପଟୁ ଉଠିଛି ଅନାମିକା । ]

ଅନାମିକା : ରାତିରେ ଭଲକରି ଶୋଇହେଲାନି ?

ମିତା : ନା'..... ।

ଅନାମିକା : କାହିଁକି ଏତେ ଚିନ୍ତା କରୁଛୁ ? ପିଲାମାନେ ଯଦି ଚାହୁଁଛନ୍ତି, ସଂପତ୍ତି ବିକିଦେ । ସେଇମାନେ ତ ଭୋଗ କରିଥା'ନ୍ତେ । କାଲି ନ ହେଲା ଆଜି । କ୍ଷତି କ'ଣ ?

ମିତା : ତୋ ବାପାତ ଆଦୌ ରାଜି ହଉନାହାନ୍ତି ।

ଅନାମିକା : ତୁ ତାଙ୍କୁ ରାଜିକରା । ତାଙ୍କର ଦୁର୍ବଳିଆ ଜାଗାଦେଖି ହାମରିଙ୍ଗ କର । ରାଜି ନ ହେଇ ଯିବେ କୁଆଡ଼େ । ତିନି ଝିଅଙ୍କ ମତାମତ ନେଇଛୁ ?

ମିତା : ସଂପତ୍ତିର ମୋହ କିଏ ଛାଡ଼ିବ । ମଝିଆ ଜ୍ୱାଇଁର ବହୁତ ସଂପତ୍ତି । ତା'ର ଏତେଟା ଲୋଭନାହିଁ । ହେଲେ ଝିଅ ଛାଡ଼ିବାକୁ ନାରାଜ ।

ଅନାମିକା : ଯଦି ସଂପତ୍ତି ବିକ୍ରି ହେଇଗଲା, ସମାନ ସମାନ ଚାରିଭାଗ କରିଦବୁ । ଚିନ୍ତାଯିବ.....

ମିତା : ଚାରି ନୁହେଁ ତିନି । ତିନିଝିଅ ତ ନେବେ । ଆମର ସଂପତ୍ତି ଆଉ କ'ଣ ହେବ !

ଅନାମିକା : ହେଲେ ମୋର ଭାଗଟା ?

ମିତା : ମାନେ ?

[ ବୁଲି ଚାହିଁଛନ୍ତି ପଛକୁ । ଆଶ୍ଚର୍ଯ୍ୟ ହୋଇଛନ୍ତି ଅନାମିକାକୁ ଦେଖି । ]

ମିତା : ତୁ ପୁଣି କିଏ ?

ଅନାମିକା : ତୋ ଝିଅ । ମା' ହେଇ ତୁ ନିଜ ଝିଅକୁ ଚିହ୍ନିପାରୁନୁ ?

ମିତା : ତୁ କାହା ଝିଅ ମା ?

ଅନାମିକା : ତୁ ଆଗ କହ । ମୁଁ ଦେଖିବାକୁ କାହାପରି ? ତୋ ପରି ନା' ବାପାଙ୍କ ପରି ?

ମିତା : ମାନେ ? କ'ଣ ସବୁ କହୁଛୁ !

ଅନାମିକା : ଓ, ହୋ..... ମାନେଟା ବି ତତେ ବୁଝେଇବାକୁ ପଡ଼ିବ ? ମୁଁ ତୋ ଝିଅ 'ଅନାମିକା' ।

ମିତା : ଦେଖ ମା'..... ମୋର ତିନୋଟି ଝିଅ । ବାସନ୍ତୀ, ମିନତୀ ଆଉ ଅବନ୍ତୀ ।

ଅନାମିକା : ତୋର ଚତୁର୍ଥ ଝିଅ ମୁଁ 'ଅନାମିକା ମହାପାତ୍ର' । ଜଗନ୍ନାଥ ମହାପାତ୍ର ଆଉ ମିତା ମହାପାତ୍ରଙ୍କର ସର୍ବକନିଷ୍ଠ ସନ୍ତାନ ।

ମିତା : ତୁ ଭୁଲ୍ କହୁଛୁ ଝିଅ । ଅବନ୍ତୀ ପରେ ଆମର ଆଉ କୌଣସି ପିଲା ନାହାନ୍ତି । ତତେ କେହି ଭୁଲ୍ ଠିକଣା ଦେଇ ଏଠିକି ଆମର ପଠେଇ ଦେଇଛି ।

ଅନାମିକା : ମୋ ଘର ଠିକଣା ପୁଣି ମୁଁ ଭୁଲିଯିବି ? ମୋ ବାପାମା'..... ଏମାନଙ୍କୁ କେମିତି ଭୁଲିଯିବି ? ତମେ ଦି'ଜଣ ସିନା ମତେ ଭୁଲିଗଲ, ହେଲେ ମୁଁ କିନ୍ତୁ ତମ ଦୁଇଜଣଙ୍କୁ ଭୁଲିନାହିଁ । କେମିତି, ବା ଭୁଲିବି !

ମିତା : ଦେଖ ମା..... ତୁ ବୁଝୁନୁ କାହିଁକି ? ଅବନ୍ତୀ ପରେ ଆମର ଆଉ ପିଲାନାହିଁ ।

ଅନାମିକା : ଅଛି..... ଅଲବତ୍ ଅଛି । ମୁଁ ତାହାଲେ କିଏ ? ମୋ ନାଁ 'ଅନାମିକା' ମହାପାତ୍ର । ତମର ଚତୁର୍ଥ ସନ୍ତାନ ।

ମିତା : ଓଃ, ମୁଣ୍ଡ ଭିତରଟା ଝିମ୍ ଝିମ୍ ହେଇଯାଉଛି ।

ଅନାମିକା : ଧନ୍ୟରେ ମା' ତୁ ! ତୋ ନିଜ ରକ୍ତକୁ ଚିହ୍ନିବାକୁ ତୁ କୁଣ୍ଠିତ !

ମିତା : ବିଶ୍ୱାସକର ଝିଅ । ଆମର ସେମିତି କେହି ପିଲା ନାହାନ୍ତି ।

ଅନାମିକା : ଅଛି..... ଅଛି..... ଅଛି.....!!! ମୁଁ ହଜାରବାର କହିବି ଅଛି । କ'ଣ ପାଇଁ ତମେ ଦି'ଜଣଯାକ ପଛଘୁଞ୍ଚା ଦେଉଛ ?

ମିତା : ତୁ ତାହେଲେ ସେଦିନ ଆସି ତାଙ୍କ ମୁଣ୍ଡ ଖରାପ କରିଥିଲୁ ! ସିଏ ଠିକ୍ କହୁଥିଲେ.....

ଅନାମିକା : କ'ଣ କହୁଥିଲେ ?

ମିତା : ଗୋଟାଏ ଝିଅ କୋଉଠୁ ଆସି ବ୍ଲାକ୍‌ମେଲିଙ୍ଗ କରୁଛି ।

ଅନାମିକା : ମୁଁ ତମମାନଙ୍କ ଭଳି ସ୍ୱାର୍ଥପର ନୁହେଁ । ମୁଁ ମୋର ହକ୍ ମାଗୁଛି । ମୋର ଅଧିକାର ମାଗୁଛି ।

ମିତା : ତୁ ମୋ ମୁଣ୍ଡଟାକୁ ଖରାପ କରିଦବୁ । ଶୁଣ ମା'..... ମୁଁ ଈଶ୍ୱରଙ୍କ ରାଣ ପକେଇ କହୁଛି ଆମର ଚତୁର୍ଥ ସନ୍ତାନ ନାହିଁ ।

ଅନାମିକା : ଥାଉ । କାହିଁକି ସେ 'ଈଶ୍ୱର' ଶବ୍ଦଟାର ଅପମାନ କରୁଛୁ ? ସତ୍ୟ..... ଧର୍ମ..... ନ୍ୟାୟକୁ ଥରେ ସମ୍ମାନ ଦେଇ ଶିଖ । ଭୁଲ୍ କରିବ ତମେ : ଆଉ ପାଣି ବୁଲେଇବ ଈଶ୍ୱରଙ୍କ ନାଁରେ.....।

ମିତା : ମୁଁ ସଫା ସଫା କହିଦେବାକୁ ଚାହେଁ । ତୁ ମୋର ଝିଅ ନୁହଁ । ବାସ୍..... ଚାଲିଯା' କହୁଛି । ମୋ ମୁଣ୍ଡ ଖରାପ କରନି ।

ଅନାମିକା : ତମେମାନେ ଏତେ ଭୀରୁ ବୋଲି ମୁଁ ଜାଣି ନଥିଲି । କୁନ୍ତୀ ସିନା ସେଦିନ ପରିସ୍ଥିତିର ଚାପରେ ଝୁଅଟାକୁ ବିସର୍ଜନ କରିବାକୁ ବାଧ ହୋଇଥିଲା । ହେଲେ ତୁ..... ? ତୁ କ'ଣ ପାଇଁ ମୋ ଜୀବନ ସହିତ ଖେଳିଲୁ ?

ମିତା : ତୁ ମତେ ପାଗଳ କରି ଛାଡ଼ିବୁ । ମୋ ମଥାଟା କଣ ହେଇଯାଉଛି । ଚାଲିଯା, କହୁଛି । ଚାଲିଯା..... ଚାଲିଯା.....

[ ଘର ଭିତରୁ ଦଉଡ଼ି ଆସିଛନ୍ତି ଜଗନ୍ନାଥ । ଆଲୋକ ଧୀରେ ଧୀରେ ଉଜ୍ଜ୍ୱଳ ହୋଇଉଠିଛି । ତା' ପୂର୍ବରୁ ଅନାମିକା ବାହାରି ଯାଇଛି । ]

ଜଗନ୍ନାଥ : କ'ଣ ହେଲା, ମିତା ?

ମିତା : ସେଇ ଝିଅଟା.....। ଆସିଥିଲା.....

ଜଗନ୍ନାଥ : କୁଆଡ଼େ ଗଲା ? ହୁଏତ ବେଶି ଦୂର ଯାଇ ନ ଥିବ ।

[ ବାହାରକୁ ଯାଇଛନ୍ତି ଖୋଜିବା ଉଦ୍ଦେଶ୍ୟରେ । ]

ମିତା : କାହିଁକି ଯେ ସେ ଝିଅଟା ମୋ ପଛରେ ପଡ଼ିଛି । କ'ଣ ପାଇଁ ସେ ମତେ ତା'ର ମା' ବୋଲି ବାଧ୍ୟ କରୁଛି ? କିଏ ଦେବ ଏହାର ଉତ୍ତର ? କିଏ ଦେବ ?

ଅନାମିକା : (Voice) ମା..... ମା..... ମା.....

ମିତା : 'ଓଃ'..... (ବିବ୍ରତ)

ଅନାମିକା : (Voice) ତୁ କ'ଣ ମତେ କୋଳକୁ ନେବୁନି ?

ମିତା : କିଏ ? କିଏ ? (ବିବ୍ରତ)

[ ଧୀରେ ଧୀରେ ଆଲୋକ ଅପ୍ ଏଣ୍ଡ ଡାଉନ୍ । ଶିଶୁର କ୍ରନ୍ଦନ । ବିବ୍ରତ ଅବସ୍ଥାରେ ପଦଚାଳନା କରିଛନ୍ତି ମିତା । ]

ଅନାମିକା : (Voice) 'ମା'..... 'ମା'.....

ମିତା : 'ନା'.....

[ ଚିତ୍କାର କରି ଉଠିଛନ୍ତି । ଚିତ୍କାରର ବେଗ କମି ଆସିଲାବେଳକୁ ଘଣ୍ଟାର ଟିକ୍ ଟିକ୍ ଆୱାଜ ବଢ଼ି ବଢ଼ି ଚାଲିଛି । ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇଆସିଛି । ]

# ଅଷ୍ଟମ ଦୃଶ୍ୟ

<u>ଚରିତ୍ର</u>

* ଅନାମିକା
* ଡାକ୍ତର

ଡାକ୍ତରଙ୍କ ପୂର୍ବ ପ୍ରକୋଷ୍ଠ । ସମୟ - ରାତି ।

[ ଚେୟାର ଉପରେ ବସି ଡାକ୍ତର ସିଗାରେଟ ପାନ କରୁଥିଲେ । ମୋବାଇଲରୁ ଗୀତ ଶୁଣୁଥିଲେ । ଧୀରେ ଧୀରେ ଆସିଛି ଅନାମିକା । ଅତି ସନ୍ତର୍ପଣରେ..... ଚାମ୍ବର ଭିତରେ ଆଲୋକ ଡିମ୍ ହୋଇଛି । ]

ଅନାମିକା : କ'ଣ ସ୍ଥିର କଲ, ଡାକ୍ତର ?

ଡାକ୍ତର : (ମୋବାଇଲ୍ ଅଫ୍‌କରି) କିଏ ? ପୁଣି ତୁ ! କ'ଣ ପାଇଁ ଆସିଛୁ ?

ଅନାମିକା : କହିଥିଲି ନା'..... ପୁଣି ଆସିବି ! ହଁ, କୁହ । ପାପକାମ ବନ୍ଦ କରିବ ନା' ଜେଲ୍ ଯିବ !

ଡାକ୍ତର : କ'ଣ ମତେ ଚ୍ୟାଲେଞ୍ଜ କରୁଛୁ ?

ଅନାମିକା : ହେଇ ବି ପାରେ । ପୂର୍ବରୁ ଚେତାବନୀ ଦେଇଯାଇଥିଲି । ଆଉ ଆଜି ଆସିଛି ହିସାବ ନିକାଶ ପାଇଁ ।

[ ଅନାମିକାର ମୁହଁ ଲାଲ୍ ହୋଇ ଉଠିଛି । ]

ଡାକ୍ତର : [ ସିଟ୍‌ରୁ ଉଠି ଯିବାକୁ ଉଦ୍ୟତ । ]

ଅନାମିକା : (ବାଧାଦେଇ) ନା..... ନା..... ଡାକ୍ତର । ତମେ ବାହାରକୁ ଯାଇପାରିବନି । ଭାବିଥିଲ, ପୋଲିସ୍‌କୁ ଜଣେଇବ ? ହେଲେ କେମିତି ? ମୋବାଇଲ ଦୁଇଟାକୁ ଥରେ ପରୀକ୍ଷା କରିଦେଖ । .

ଡାକ୍ତର : [ ପରୀକ୍ଷା କରି ] ଆରେ ଏ ଦୁଇଟାଯାକ ଯେ ଅଚଳ । କହ ତୁ କିଏ ? କ'ଣ ଚାହୁଁ ?

ଅନାମିକା : ଏଇଟା ନିଶ୍ଚିତ, ଡେଭିଲ୍ ମାନେ ପ୍ରେତାତ୍ମା ନୁହେଁ । ତେବେ ଚେଷ୍ଟା କଲେ ବି ତମେ ମତେ ଛୁଇଁ ପାରିବ ନାହିଁ । କାରଣ ମୋର ଶରୀର ନାହିଁ ।

ଡାକ୍ତର : ତୁ ତାହେଲେ 'Ghost' । (ଭୟରେ)

[ ଡାକ୍ତରଙ୍କ ସ୍ୱର ନରମି ଯାଇଛି । ]

ଅନାମିତା : ତାହା ବି ନୁହେଁ । ଗୋଟାଏ ସବୁଜିତ ଆତ୍ମା । ଯିଏ ତା'ର ପରିଚୟ ମାଗୁଛି ।

ଡାକ୍ତର : ହେଲେ ମୁଁ ତତେ କି ସାହାଯ୍ୟ କରିପାରିବି ?

ଅନାମିକା : ପାରିବ ଡାକ୍ତର । ତମେ ନିଶ୍ଚୟ ପାରିବ । ପ୍ରଥମେ ଭ୍ରୂଣହତ୍ୟା ବନ୍ଦ କର । ତା'ପରେ ସବୁ ରାସ୍ତା ଖୋଲିଯିବ । ଲିଙ୍ଗ ନିର୍ଣ୍ଣୟକୁ ଭାରତ ସରକାର ବ୍ୟାନ୍ କରିଥିଲେ ମଧ୍ୟ କ'ଣ ପାଇଁ ତମେ ସେ ପ୍ରକାର ଜଘନ୍ୟ କାମରେ ଆଗେଇ ଯାଉଛ ?

ଡାକ୍ତର : ମୋ ପ୍ରଫେସନକୁ ମୁଁ କେମିତି ହତାଦର କରିବି ?

ଅନାମିକା : ଛାତିରେ ହାତଦେଇ କହିଲ, ବେଆଇନ୍ ଲିଙ୍ଗ ନିର୍ଣ୍ଣୟ କରିବାକୁ ଯାଇ ଯେତିକି କନ୍ୟାଭ୍ରଣ ହତ୍ୟାକରିଛ, ସେଇଟା କ'ଣ ତମ ପ୍ରଫେସନ ? କେଉଁ ମେଡିକାଲ କୋଡ୍‌ରେ ଲେଖାଅଛି କନ୍ୟା ଭ୍ରୂଣହତ୍ୟା କରିବ ?

ଡାକ୍ତର୍ : ମୁଁ ତୋ ପାଖରେ କି ଅପରାଧ କରିଛି ? ତା'ପରେ ଏ ସହରରେ କିଏ ଭ୍ରୂଣହତ୍ୟା ନ କରୁଛି ! ଏ ସହର କାହିଁକି, ସାରା ଦେଶରେ ଅବାଧରେ ଭ୍ରୂଣହତ୍ୟା ଚାଲିଛି । କାହିଁ, କେହି ତ ଏ କଥା ଉଠାଉନି ?

ଅନାମିକା : ଡାକ୍ତର ତମେ ବାପ ହେଇନ। । ପିଲା ଥିଲେ ତମେ ବାପର ମମତା କଥା ଜାଣିଥା'ନ୍ତ ! ମାତୃଜାତି ପ୍ରତି ତମେ ଯେଉଁ ଅନ୍ୟାୟ କରିଚାଲିଛ, ତା'ର କ୍ଷମା ନାହିଁ ।

ଡାକ୍ତର : ବଂଚିବା ପାଇଁ ଏ ସବୁ ପାପନୁହେଁ । ମୁଁ ନ କଲେ କେହି ନା କେହି ତ ଏ କାମ କରିବ !

ଅନାମିକା : ଖସିଯିବାକୁ ଚେଷ୍ଟା କରନି ଡାକ୍ତର । ତମେ ଯାହାଠାରୁ ଜନ୍ମ ହୋଇଛ, ସିଏ ବି ଦିନେ ମା' ଥିଲା ! ସିଏ ବି ଦିନେ କାହାରି କନ୍ୟା ଥିଲା ! କେମିତି ବିନା ଦ୍ୱିଧାରେ ମାତୃହତ୍ୟା କରିଚାଲିଛ ? ତମକୁ ଲାଜଲାଗୁନି, ଡାକ୍ତର.....।

ଡାକ୍ତର : [ ବିବ୍ରତ ହୋଇପଡ଼ିଛନ୍ତି ] କ'ଣ ତୁ ଚାହୁଁଛୁ ?

ଅନାମିକା : 'ପ୍ରାୟଶ୍ଚିତ' । ମା' ମାଟି ମମତାକୁ ଥରେ ସମ୍ମାନ ଦେଇ ଶିଖ । ତମ ଜୀବନ ଧନ୍ୟ ହୋଇଯିବ । ବାକି ରହିଲା ଅପରାଧ କଥା । ଆଜିକି ଠିକ୍ ୨୦ ବର୍ଷ ତଳର କଥା । ମନେପକାଅ ।

[ ଡାକ୍ତର ମନେପକାଇବାକୁ ଚେଷ୍ଟା କରିଛନ୍ତି । ]

ଡାକ୍ତର : ନା' କିଛି ମନେ ପଡୁନି ।

ଅନାମିକା : ଫେବୃଆରୀ ୨୯ ତାରିଖ । ଲିପ୍ ଇଅର.....। ଏଇ କ୍ଲିନିକ୍.....। ସାଙ୍ଗରେ ତମକୁ ସାହାଯ୍ୟ କରିଥିଲେ ଡକ୍ଟର ମହାନ୍ତି । ନର୍ସ ଅନୀତା । ଆସିଷ୍ଟାଣ୍ଟ ବିଜୟ.....।

ଡାକ୍ତର : କିଛି ମନେପଡୁନି । ତା'ପରେ ସେମାନେ ଏବେ ବି ତ ମତେ ସାହାଯ୍ୟ କରୁଛନ୍ତି ।

ଅନାମିକା : ଅନୀତାର ସ୍ୱାମୀ ମରିଯାଇଛି । ବିଜୟର ଗୋଟିଏ ଝିଅ ପୋଲିଓ ଆକ୍ରାନ୍ତ । ଏ ସବୁ ସେଇ ପାପର ଫଳ ।

ଡାକ୍ତର : କ'ଣ କହିବାକୁ ଚାହୁଁଛୁ ?

ଅନାମିକା : ତମ ନିଜ କଥା ଥରେ ଭାବ । ପାଦତଳର ଘା'ଟା ବାରବର୍ଷ ହେଲାଣି ଶୁଖୁନି । କ'ଣ ପାଇଁ ,? ଚିନ୍ତାକର । କେତେଥର ଅପରେସନ ହେଲଣି । ତଥାପି, ଯେମିତି ଥିଲା ସେମିତି ।

ଡାକ୍ତର : ସେଇଟା ମୋ ପର୍ସନାଲ ମ୍ୟାଟର । ମୋ ବ୍ୟକ୍ତିଗତ କାମ ।

ଅନାମିକା : ଫେବୃଆରୀ ୨ ୯ ତାରିଖ । ସେଦିନ ତମେମାନେ ମିଶି ମତେ ଯେମିତି ଜଘନ୍ୟ ଭାବେ ହତ୍ୟାକଲ, ସେଇଟା କୋଉ ପୁଣ୍ୟକାମ ଥିଲା ? ମାତ୍ର ଦି'ହଜାର ଟଙ୍କା ଲୋଭରେ ସେଦିନ ମତେ ତମେ ଖ୍ୱନ୍‌କ୍ଲିନ୍ କରିଦେଲ । ସେ ଦୃଶ୍ୟକଥା ମନେପକାଅ ।

ଡାକ୍ତର : କେହି ବି ଏ କଥା ପଚାରି ନାହାନ୍ତି । କର୍ତ୍ତବ୍ୟରେ ମୁଁ କେବେ ଅବହେଳା କରେନି ।

ଅନାମିକା : କନ୍ୟା ଭ୍ରୂଣହତ୍ୟା କରିବାଟା କେଉଁ ପବିତ୍ର କର୍ତ୍ତବ୍ୟ ? କେଉଁ ମେଡିକାଲ ଏଥିକ୍‌ସରେ ଏଇଟା ଲେଖାଅଛି ? ସାମାନ୍ୟ କେଇଟା ଟଙ୍କା ଲୋଭରେ..... । ଛି..... ଛି..... ଡାକ୍ତର.....। ତମେ ମଣିଷ ନୁହଁ, ଗୋଟାଏ ପଶୁ, ଗୋଟାଏ ଜଲ୍ଲାଦ.....।

ଡାକ୍ତର : ଆଃ..... କାହିଁକି ମତେ ଛଟପଟ କରୁଛୁ ? ମତେ ଟିକେ ଏକୁଟିଆ ଛାଡ଼ିଦେ ।

ଅନାମିକା : ସେଦିନ ମୁଁ ଏମିତି ଛଟପଟ ହେଉଥିଲି । ବଂଚିବାପାଇଁ କେତେ ପ୍ରାର୍ଥନା କରିଥିଲି । ହେଲେ ତମେ ମୋର କୌଣସି କଥା ଶୁଣି ନ ଥିଲ....।

କେଇଟା ଟଙ୍କା ଲୋଭରେ ମୋତେ ଶେଷ କରିଦେଲ ! ଗୋଟାଏ ନିଷ୍ପାପ କନ୍ୟାଭ୍ରୂଣକୁ ସୂର୍ଯ୍ୟାଲୋକ ଦେଖିବାକୁ ଦେଲ ନାହିଁ ।

[ ଡାକ୍ତର ବିବ୍ରତ ଅବସ୍ଥାରେ ନିଜର କାନକୁ ଚିପି ଧରୁଥିଲେ । ଦୁଇଟା ଯାକ ମୋବାଇଲ ଚିତ୍କାର କରି ଉଠିଛନ୍ତି । ବ୍ୟସ୍ତ ବିବ୍ରତ ଡାକ୍ତର ନିଜ ଟେବୁଲ ଉପରେ ମଥା ରଖିବାକୁ ଚେଷ୍ଟା କରିଛନ୍ତି । ବାରମ୍ବାର ବାରମ୍ବାର କୈଫତ୍ ମାଗି ଚାଲିଛି ହାଂତର ମୁଦ୍ରାରେ ଅନାମିକା । ଶେଷକୁ ଘଣ୍ଟାର ଟିକ୍ ଟିକ୍ ଆୱାଜର ଗତିବେଗ ଖୁବ୍ ଜୋର୍‌ରେ ବଢ଼ି ଚାଲିଛି । ତା'ରି ଭିତରେ ଅନେକ ଶିଶୁର କ୍ରନ୍ଦନ ରୋଳ ମଧ୍ୟ ବିଳପି ଉଠିଛି । ଟେବୁଲ ଉପରେ ମଥା ରଖିଛନ୍ତି ଡାକ୍ତର । ମଞ୍ଚ ଧୀରେ ଧୀରେ ଅନ୍ଧାର ହୋଇଆସିଛି । ]

# ନବମ ଦୃଶ୍ୟ

<u>ଚରିତ୍ର</u>

* ଜଗନ୍ନାଥ
* ମିତା
* ଅନାମିକା

ସମୟ ରାତି ।

[ ଜଗନ୍ନାଥଙ୍କ ଡ୍ରଇଂରୁମ୍ । ଘର ଭିତର । ଉଭୟ ଜଗନ୍ନାଥ ଏବଂ ମିତା କଥାବାର୍ତ୍ତା ହେଉଛନ୍ତି । ]

ଜଗନ୍ନାଥ : ସେ ସଂପତ୍ତି ମୁଁ କରିନି । ବାପା କରିଛନ୍ତି । ତାଙ୍କ ସଂପତ୍ତି ବିକିବାକୁ ମୁଁ କିଏ ? ତମେ ସେମାନଙ୍କୁ ସିଧା ସଳଖ ମନା କରିଦିଅ ।

ମିତା : ପିଲାମାନଙ୍କୁ କେମିତି ଏ କଥା ମୁଁ କହିବି ?

ଜଗନ୍ନାଥ : ଆମ ଅନ୍ତେ ସେହିମାନେ ତ ସଂପତ୍ତି ପାଇବେ । ବଂଚି ଥାଇଁଥାଇଁ ସେମାନେ କାହିଁକି ଆମକୁ ମାରିଦେବାକୁ ଚାହୁଁଛନ୍ତି ?

ମିତା : ଦିନେ ନା ଦିନେ ସେହିମାନଙ୍କ ଉପରେ ତ ଆମେ ନିର୍ଭର କରିବା । ତା'ହେଲେ କାହିଁକି ସେମାନଙ୍କ ମନରେ ଆଘାତ ଦେବା ?

ଜଗନ୍ନାଥ : ସେବାରେ ସ୍ୱାର୍ଥ ଜଡ଼ିତ ହେଲେ ତା'ର ମୂଲ୍ୟ କମିଯାଏ । ବୃଦ୍ଧ ପିତାମାତାଙ୍କ ଯତ୍ନ ନେବା ପୁତ୍ରମାନଙ୍କ କର୍ତ୍ତବ୍ୟ । ନୈତିକ କର୍ତ୍ତବ୍ୟ । ଏଥିପାଇଁ ପାରିଶ୍ରମିକ ଦିଆଯାଏନା ।

ମିତା : ତମେ ବୁଝୁନ କାହିଁକି ? ଆଜିକାଲିକା ଯୁଗର ପିଲା ଏମାନେ । କୋଉଠୁ ସଂସ୍କାର ଶିଖିବେ !

ଜଗନ୍ନାଥ : କୂଅରେ ପାଣି ଥାଏ । କୂଅ କ'ଣ କେବେ କହେ, 'ସବୁ ପାଣି ମୋର । ମୁଁ କାହାକୁ ଦେବିନି ।' ବୃକ୍ଷ କ'ଣ କେବେ କହିପାରିବ, 'ସବୁ ଫୁଲ ଫଳ ମୋର । ମୁଁ କାହାରିକୁ ଦେବିନି ।' ସେମିତି କିଛି ଜିନିଷ ମଣିଷ ନିଜ ନୀତି ସଂସ୍କାରରୁ ଶିଖିଥାଏ । ତାକୁ ଏ ବିଷୟରେ କେହି ଶିକ୍ଷା ଦେଇ ନ ଥାଏ ।

ମିତା : ଶୁଣ, ତମେ ତ ମହାଜ୍ଞାନୀ । ଏ ଗୁଡ଼ାକ ମୋ ମୁଣ୍ଡ ଭିତରେ ପଶୁନି । ତମର ଯାହା ଇଚ୍ଛା ହେଉଛି କର । ମୁଁ ଯାହା କହିବା କଥା, କହିଦେଲି ।

[ ବାହାରୁ ଆସିଛନ୍ତି ବଳରାମ । ହାତରେ ପରିବା ବ୍ୟାଗ୍ । ହାତରୁ ପରିବା ଧରି ଫେରିଛନ୍ତି । ]

ବଳରାମ : ଆରେ ଜଗା, କ'ଣ ଭେରଣ୍ଡା ବିଚାର ଚାଲିଛି ! ସିଏ ଝିଅ କ'ଣ ପୁଣି ଆସିଥିଲା ?

ମିତା : ନାଇଁ ଭାଇ, ସିଏ ଆଉ ଆସିନି । ତାକୁ ଏମିତି ଶୁଣାଇଛି, ଆଉ ଦିନେ ଏ ଯାଗା ମାଡ଼ିବ ନାହିଁ ।

ବଳରାମ : ଆରେ କ'ଣ ଭାବୁଛୁ, ଜଗା ? ସେ ବାଜେ କଥାଗୁଡ଼ାକ ମୁଣ୍ଡ ଭିତରୁ ବାହାର କରିପକା । ଭାରି ଶାନ୍ତି ମିଳିବ ।

ମିତା : ମୁଁ ତ କହି କହି ତାକୁ ଥକିଲିଣି । ସଦାବେଳେ ସିଏ ଭାରି ଅନ୍ୟମନସ୍କ ରହୁଛନ୍ତି ।

ଜଗନ୍ନାଥ : ତମେ ଜାଣିନ, ମୁଁ କାହିଁକି ଅନ୍ୟମନସ୍କ ରହୁଛି ।

ମିତା : ସମସ୍ୟା ଯାହା ଥାଉ ନା କାହିଁକି, ସମାଧାନ ତ ପୁଣି ରହିଛି ।

ବଳରାମ : ସିଏ ତ ଠିକ୍ କଥା କହୁଛି ।

ଜଗନ୍ନାଥ : ସମସ୍ୟାଟା ସେଠି ନାହିଁ ।

ବଳରାମ : ଆଉ ତା'ହେଲେ ?

ଜଗନ୍ନାଥ : ଝିଅମାନେ ଚାହୁଁଚନ୍ତି, ଆମେ ଦି'ଜଣ ଯାଇ ସେମାନଙ୍କ ପାଖରେ ରହିବୁ ।

ବଳରାମ : ଭଲ କଥାତ । ଅସୁବିଧା ରହିଲା କେଉଁଠି ? ପୁଅମାନେ ତ ବାପାମା'ଙ୍କୁ ପଚାରୁନାହାନ୍ତି । ହେଲେ ଝିଅମାନେ ସେ ଭୁଲ୍ କେବେ କରିବେନି । ମଲାଯାଏ ବାପମା'ଙ୍କୁ ପଚାରୁଥିବେ । ଶେଷରେ କୋଉଠି ସ୍ଥାନ ନ ମିଳିଲେ, ଝିଅ ଘର ତ ଅଛି ।

ଜଗନ୍ନାଥ : କଥାଟା ଠିକ୍ ସେଇଆ ନୁହେଁ ।

ମିତା : ଝିଅଙ୍କାଇଁ ଚାହୁଁଛନ୍ତି, ଏଠିକା ସଂପରି ଆମେ ବିକିଦେଇ ତାଙ୍କ ପାଂଖରେ ରହିବୁ ।

ବଳରାମ : କ'ଣ ଜଣକା ପାଖରେ ଚାରିମାସ ଲେଖାଏଁ ?

ଜଗନ୍ନାଥ : ଯଦିଚ ଠିକ୍ ସେଇଆ ନୁହଁ, ତେବେ—

ମିତା : ରିଟାୟାଡ ହେଲ । କେହି ତ ନାହାନ୍ତି । ସେମାନଙ୍କ ପାଖେ ରହିଲେ କ୍ଷତି କ'ଣ ?

ଜଗନ୍ନାଥ : ମତେ ଏଇଟା ଭଲଲାଗୁନି । ସେଠି ଆମର ସ୍ୱାଧୀନତା ରହିବନି । ତାଙ୍କ ହାତଟେକା ଅନ୍ନ ଉପରେ ନିର୍ଭର କରିବାଟା..... ମୁଁ ଆଦୌ ପସନ୍ଦ କରୁନି । ମୋ ବିବେକ ମତେ ବାଧା ଦେଉଛି ।

ମିତା : ତମେ ପେନସନ ପାଉଛ । ତାଙ୍କ ଉପରେ କାହିଁକି ବୋଝ ହେବ ।

ଜଗନ୍ନାଥ : ଭାଇ, ତମେ କ'ଣ ଭାବୁଛ ?

ବଳରାମ : ଦେଖ୍ ଜଗା, ଏଇଟା ତମେ ଦି'ଜଣ ଭଲ ଭାବେ ଥରେ ଚିନ୍ତାକର । ତରବରରେ କୌଣସି ଡିସିସନ ନିଅନି ।

ମିତା : ଆମ ହାତରେ ସମୟ ଅଛି ।

ଜଗନ୍ନାଥ : ସମୁଦାୟ ଘଟଣାଟାକୁ ମୁଁ ଆଦୌ ପସନ୍ଦ କରୁନି ।

ମିତା : ଠିକ୍ ଅଛି । ତା'ହେଲେ ଏଇଠି ମଲାଯାଏ ପଡ଼ିରହିବା ।

ବଳରାମ : ଆରେ ଜଗା, ହାଟକୁ ଆସିଥିଲି । ତୋ ଆଡ଼େ ଟିକିଏ ମାଡ଼ି ଆସିଲି । ହଁ, ଯାହା ଫାଇନାଲ କରୁଛ, ଦି'ଜଣ ବୁଝି ବିଚାରି କର । ମୁଁ ତା'ହେଲେ ଆସୁଛି.....

[ ବାହାରକୁ ବାହାରିଗଲେ ବଳରାମ । ତାଙ୍କ ବାଟକୁ ଚାହିଁ ରହିଥିଲେ ଉଭୟ । ]

ଜଗନ୍ନାଥ : ଠିକ୍ ଅଛି । ଭଲ ଭାବେ ଚିନ୍ତାକରିବା ।

ମିତା : ଯାହା କରିବା କଥା ତମେ କର । ମତେ ସେସମ୍ବନ୍ଧରେ ଆଦୌ ପୂରାଅନି ।

[ କଲିଙ୍ଗ ବେଲ ବାଜିଲା । ସଚେତନ ହୋଇ ଉଠିଲେ ଉଭୟ । ]

ଜଗନ୍ନାଥ : ଏତେ ରାତିରେ ପୁଣି କିଏ ଆସିଲା.....

ମିତା : କବାଟ ଖୋଲା ଅଛି । ଆସ ।

[ ଭିତରକୁ ଆସିଛି ରାମୁ । ]

ଜଗନ୍ନାଥ : ଆରେ ରାମବାବୁ ! ହଠାତ୍ ଆମ ଆଡ଼େ ! ସେଇ ଝିଅ ଡାକ୍ତରବାବୁଙ୍କୁ ପୁଣି ହଇରାଣ କରିନି ତ ?

ରାମୁ : ସାର୍ ଆପଣଙ୍କ ଘର ଆଡ଼େ ଆସିନାହାନ୍ତି ? ସକାଳଠାରୁ ସାର୍‌ଙ୍କ ଦେଖାନାହିଁ । ପେସେଣ୍ଟମାନେ ବସି ବସି ଫେରିଲେ ।

ମିତା : କିଛି ଅସୁବିଧା ହେଇନି ତ ?

ରାମୁ : କିଛି ଦିନ ହେଲା ସାର୍ ଭାରି ଅନ୍ୟମନସ୍କ ରହୁଛନ୍ତି । କଥା କଥାକେ ମୋ ଉପରେ ଚିଡ଼ି ଯାଉଛନ୍ତି ।

ଜଗନ୍ନାଥ : ସେ ଝିଅ ଯା' ଭିତରେ ଆସିନାହିଁ ତ ?

ରାମୁ : ସେ କଥା ସିଏ ଜାଣନ୍ତି । ମୋର ସେ ଭୂତପ୍ରେତ ଉପରେ ବିଶ୍ୱାସ ନାହିଁ । ସକାଳୁ ଗଲେଣି । ଫୋନ୍ ବି କରିନାହାନ୍ତି । ତାଙ୍କ ଦି'ଟାଯାକ ମୋବାଇଲ ମଧ୍ୟ ସୁଇଚ୍ଅଫ୍ ରହିଛି ।

ମିତା : ଘଟଣାଟା ମତେ କାହିଁକି ଭଲ ଜଣାପଡୁନି । ସେଇ ଝିଅ ଅନାମିକା ନିଶ୍ଚୟ ତାଙ୍କୁ କିଛି ଅସୁବିଧାରେ ପକେଇଛି ।

ରାମୁ : ଆଜ୍ଞା, ଆପଣମାନେ ଶିକ୍ଷିତ ଲୋକ ହେଇ ସେ ଭୂତପ୍ରେତକୁ ବିଶ୍ୱାସ କରୁଛନ୍ତି । ମୁଁ ତାହେଲେ ଯାଉଛି । ଆଉ ଦି'ଯାଗା ଦେଖିନିଏ । ହୁଏତ ସେଠି ମିଳିଯାଇ ପାରନ୍ତି ।

[ ବାହାରକୁ ବାହାରିଗଲା ରାମୁ । ଉଭୟ ବର୍ତ୍ତମାନ ଚିନ୍ତାଗ୍ରସ୍ତ । ପରସ୍ପରର ମୁହଁକୁ ଚାହୁଁଥିଲେ ଜଗନ୍ନାଥ ଆଉ ମିତା । ]

ଜଗନ୍ନାଥ : ଡାକ୍ତରବାବୁ ତ ନର୍ସିଙ୍ଗହୋମ ଛାଡ଼ି ରହିବା ଲୋକ ନୁହନ୍ତି । ତା'ହେଲେ ଗଲେ କୁଆଡ଼େ । ମତେ ଲାଗୁଛି ଅନାମିକା ନିଶ୍ଚୟ ତାଙ୍କ ପାଖକୁ ଆସିଛି ।

ମିତା : ତାଙ୍କୁ ତାଙ୍କ ବାଟରେ ଛାଡ଼ିଦିଅ । ଆମ ନିଜ କଥା ଭାବ ।

ଜଗନ୍ନାଥ : ମୋ ମୁଣ୍ଡରେ କିଛି ପଶୁନି ।

ମିତା : ମୋ କଥା ଶୁଣ । ଏବେଠୁଁ କଂପନିକୁ ତିନିଝିଅଙ୍କ ନାଁ'ରେ ଉଇଲ କରିଦେବା । ତିନିଟା ସେୟାର କରିଦେଲେ ଆମ କାମ ଶେଷ୍ ।

[ ହଠାତ୍ ଲାଇଟ୍ ଡିମ୍ ହୋଇଛି । ଭିତରକୁ ଆସିଛି ଅନାମିକା । ]

ଅନାମିକା : ଆଉ ମୋ ସେୟାର ? ମତେ କ'ଣପାଇଁ ଭୁଲି ଯାଉଛ ? ମୁଁ ତମର ଚତୁର୍ଥ ସନ୍ତାନ 'ଅନାମିକା'.....

[ ଉଭୟ ବୁଲିପଡ଼ି ଚାହିଁଛନ୍ତି । ]

ଜଗନ୍ନାଥ : ତୁ ପୁଣି ଆସିଲୁ ?

ମିତା : କାହିଁକି ଆମକୁ ବାରମ୍ବାର ହଇରାଣ କରୁଛୁ ? କ'ଣ ତୁ ଚାହୁଁଛୁ ?

ଅନାମିକା : ମୋ ସେଆର । ସଂପତ୍ତି ଚାରିଭାଗ ହେବ । ମୁଁ କାହିଁକି ମୋ ସେୟାର ଛାଡ଼ିବି ?

ଜଗନ୍ନାଥ : ମିତା, ତମେ ତା' ସାଙ୍ଗରେ ଗପୁଥାଅ । ମୁଁ ଟିକେ ଆସୁଛି ।

ଅନାମିକା : ଛି..... ଛି..... ବାପ ହେଇ ନିଜ ଝିଅକୁ ପୋଲିସ୍‌ରେ ଧରାଇ ଦେବାକୁ ଯାଉଛ !

ମିତା : ତୁ ଆମ ଝିଅ ନୁହଁ । ଆମର ତିନୋଟି ଝିଅ ।

ଅନାମିକା : ବାରମ୍ବାର କାହିଁକି ସେହି ଗୋଟିଏ କଥା ରିପିଟ୍ କରିଚାଲିଛ ? ବାପା ମା' ହେଇ ତମେମାନେ ଯଦି ନିଜ ସନ୍ତାନକୁ ଅସ୍ୱୀକାର କରିବ, ଏ ଦୁନିଆ କାହା ଉପରେ ଭରସା କରିବ ?

ଜଗନ୍ନାଥ : ତୁ ଆମର ଝିଅ ବୋଲି କିଛି ପ୍ରମାଣ ଅଛି ?

ଅନାମିକା : ଡି.ଏନ୍.ଏ. ଟେଷ୍ଟ କର । ସବୁ କଥା ଜଣା ପଡ଼ିଯିବ । ସେତେବେଳେ ଜାଣିବ, ମୋ ଶରୀରରେ କାହାରକ୍ତ ବହୁଛି ।

[ ବିବ୍ରତ ହୋଇପଡ଼ିଛନ୍ତି ଜଗନ୍ନାଥ ଏବଂ ମିତା । ]

ମିତା : ତୁ ଅଯଥାରେ କାହିଁକି ଆମକୁ ଝାମେଲାରେ ପକଉଛୁ ?

ଅନାମିକା : ମୁଁ ପକାଉଛି ? ଏ କଥା ମା' ହେଇ ତୁ କହିପାରୁଛୁ ?

ମିତା : ମୁଁ ତୋର ମା' ନୁହଁ । ସବୁ ଦିଅଁ ଦେବତାଙ୍କ ରାଣ ପକେଇ କହୁଛି–

ଅନାମିକା : ବାସ୍ ବନ୍ଦକର ସେ ପ୍ରହେଳିକା । ଦିଅଁ ଦେବତା କ'ଣ ପଥର ନା' ମାଟିଗୋଡ଼ି ! କାହିଁକି ସେମାନଙ୍କ ନାଁ'କୁ ଅପବିତ୍ର କରିବୁ ?

ଜଗନ୍ନାଥ : ଦେଖ୍, ଆମେ ତତେ କିଛି କହୁନୁ ବୋଲି, ତୁ ବହୁତ ବଢ଼ିବଢ଼ି କଥାବର୍ତ୍ତା କରୁଛୁ ! ସହିବାର ଗୋଟାଏ ସୀମା ଅଛି ! ତୁ କ'ଣ ଭାବୁଛୁ ନିଜକୁ !

ଅନାମିକା : ମୋର ବି ସହିବାର ସୀମା ଅଛି ! କାହିଁକି ପରିଚୟ ଲାଗି ମତେ ବାରମ୍ବାର ଏଠାକୁ ଦଉଡ଼ିବାକୁ ପଡ଼ିବ ? ଏ ଦୌଡ଼ର କ'ଣ ଶେଷ ନାହିଁ ?

ଜଗନ୍ନାଥ : ମୁଁ ପୁଣିଥରେ ସେଇ ଏକାକଥା କହିଦଉଛି, ତୁ ଆମ ଝିଅ ନୁହଁ । ତୁ ଡି.ଏନ୍.ଏ. ଟେଷ୍ଟକର, କି ଆଉ କି ଟେଷ୍ଟ କର । କିଛି ବାହାରିବନି । ଆଇନ ପ୍ରମାଣ ଖୋଜିବ ।

ଅନାମିକା : ପରିଚୟପାଇଁ ମତେ ଆଇନ୍‌ର ଦ୍ୱାରସ୍ଥ ହେବାକୁ ପଡ଼ିବ ? ବାଃ..... ବାଃରେ ଏ ଯୁଗର ପିତାମାତା ! ଏତେ ଘଟଣା ପରେ ବି ନିଜ ଜନ୍ମକଲା ଝିଅକୁ ବି ଅସ୍ୱୀକାର କରୁଛ ?

ମିତା : ହଁ, କାହିଁକି ତୁ ଆମ ପଛରେ ପଡ଼ିଛୁ ?

ଜଗନ୍ନାଥ : ବାର୍ଥ ସାର୍ଟିଫିକେଟ୍ ଦେଖେଇ ପାରିବୁ ?

[ ଅନାମିକା ତଳକୁ ମୁହଁ କରିଛି । ]

ମିତା : ଆମେ ଜାଣିଛୁ, ତୁ ପ୍ରମାଣ ଦେଖେଇ ପାରିବୁନି । ଯା' ଚାଲିଯା..... ଭଲରେ ଭଲରେ ବାହାରିଯା'.....

ଅନାମିକା : ତମ ଦୁଇଜଣଙ୍କ ଉପରେ ଦୟା ଆସୁଛି । ବାପମା' ହୋଇ ଝିଅର ବାର୍ଥ ସାର୍ଟିଫିକେଟ୍ ଖୋଜୁଛ ? ଲଜ୍ଜା ଲାଗୁନି ତମ ଦୁହିଁଙ୍କୁ !

ଜଗନ୍ନାଥ : ସଦାବେଳେ ସତ୍ୟଟା ପ୍ରମାଣ ଖୋଜିଥାଏ । ଆଉ ସେ ପ୍ରମାଣ ତୋ ପାଖରେ ନାହିଁ । (ହସି ହସି)

ଅନାମିକା : ବିନା ପ୍ରମାଣରେ ଅନାମିକା କାହାପାଖକୁ ଯାଏନା ।

[ ଗମ୍ଭୀର ହୋଇ ଉଠିଛନ୍ତି ଜଗନ୍ନାଥ ଏବଂ ମିତା । ]

ଅନାମିକା : ମନେପକାଅ । ଆଜିକୁ କୋଡ଼ିଏ ବର୍ଷତଳେ । ମହାପାତ୍ର ଆନ୍‌ଜେଇ କ୍ଲିନିକ୍ । ଫେବୃଆରୀ ୨୯ ତାରିଖ.....।

ଜଗନ୍ନାଥ : କ'ଣ ହେଇଥିଲା ? ୨୦ବର୍ଷ ତଳର କଥା କିଏ କାହିଁକି ମନେ ରଖିବାକୁ ଯିବ ?

ଅନାମିକା : ତୁ (ମିତାକୁ) ତ ମନେପକାଇପାରିବୁ !

ମିତା : ନା', ମୋର କିଛି ମନେନାହିଁ ।

ଅନାମିକା : ମିଛ କହୁଛୁ । ତମେ ବି'. ଜଣଯାକ ମିଛ କହୁଛ ।

ମିତା : ୨୦ବର୍ଷ ତଳର କଥା ମୁଁ କାହିଁକି ମନେ ରଖିବି ?

ଅନାମିକା : ହେଲେ ମୁଁ ଭୁଲିପାରୁନି, ସେ ଜଘନ୍ୟ ଦୃଶ୍ୟକୁ । ଅପରେସନ ଟେବୁଲ ! ଓଃ..... କି ନାରକୀୟ ସେ ଦୃଶ୍ୟ !

ମିତା : କିଛି ମନେପଡୁନି । ଅବଶ୍ୟ ଆମର ତିନୋଟିଯାକ ଝିଅ ସେହି ଆନଜେଇ ନର୍ସିଂହୋମରେ ଜନ୍ମ ହୋଇଛନ୍ତି ।

ଅନାମିକା : ଆଉ ମୁଁ ?

ମିତା : କ'ଣ ସେ ତୁ କହୁଛୁ ?

ଜଗନ୍ନାଥ : କ'ଣ ଏମିତି କଥାବାର୍ତ୍ତା କରୁଛୁ ?

ଅନାମିକା : ଲାଗ୍ ଲାଗ୍ ତିନିଟା ଝିଅ ହୋଇଗଲେ ବୋଲି ତମେ ଦି' ଜଣଯାକ ଖୁବ୍ ଭାଙ୍ଗି ପଡ଼ିଥିଲ । ଚତୁର୍ଥ ଗର୍ଭରେ ମୁଁ ଥିଲି । ଡାକ୍ତର ବେଆଇନ ଭାବେ ଲିଙ୍ଗ ନିର୍ଣ୍ଣୟ କରିଥିଲା । କନ୍ୟାଭ୍ରୂଣ ବୋଲି ଜାଣିସାରିବା ପରେ ତମେ ଦି'ଜଣ ଯାକ ମତେ ସେ ଡାକ୍ତରଟା ହାତରେ ଟେକିଦେଲ..... [ ସ୍ୱର କରୁଣ ]

[ ବଦଳୁଥିଲା ଲାଇଟରେ ରଂଗ ବାରମ୍ବାର । ଶିହରି ଉଠୁଥିଲେ ଜଗନ୍ନାଥ ଏବଂ ମିତା । ମନେ ପକାଇବାକୁ ଚେଷ୍ଟା କରୁଥିଲେ ଅତୀତକୁ । ଶବ୍ଦର ସିଂଫୋନି । ]

ଅନାମିକା : ସେ ଜଲ୍ଲାଦଟାର ଟିକିଏ ବି ଦୟାମାୟା ନ ଥିଲା । ମୋ ନରମ ମାଂସପିଣ୍ଡୁଳାକୁ ଖିନ୍‌ଭିନ୍ କରିଦେଲା । ସେହିଦିନଠାରୁ ମୋର ଅତୃପ୍ତ ଆତ୍ମା ଘୁରିବୁଲୁଛି । ମୁଁ ଶାନ୍ତି ପାଉନି । ଆଉ ତମେ ଦି'ଜଣ ମୋର ପିତାମାତା ହେଇ.....

[ ଭାଙ୍ଗି ପଡ଼ିଥିଲେ ମିତା ଓ ଜଗନ୍ନାଥ । ]

ଜଗନ୍ନାଥ/ମିତା : ଆମକୁ କ୍ଷମା କରିଦେ ମା । ଆମେ ଜୀବନରେ ମହାପାପ କରିଛୁ ! ଏ ପାପକୁ, ଅନାମିକା ତୁ ହିଁ କେବଳ କ୍ଷମା କରିପାରିବୁ ! ଆମକୁ କ୍ଷମା କରିଦେ..... କ୍ଷମା କରିଦେ.....

ଅନାମିକା : କ୍ଷମା ମତେ ନୁହେଁ, ବରଂ ସେହିମାନଙ୍କୁ ସଚେତନ କରାଅ, ଯେଉଁମାନେ ଅବାଧରେ ଭ୍ରୂଣହତ୍ୟା କରିଚାଲିଛନ୍ତି । କନ୍ୟା ଭ୍ରୂଣହତ୍ୟା ବନ୍ଦ କରାଅ.....

[ ଅନାମିକାର ମଥାକୁ ସାଉଁଳି ଦେଉଥିଲେ ଜଗନ୍ନାଥ ଏବଂ ମିତା । ଘଣ୍ଟାର ଟିକ୍‌ଟିକ୍ ଆୱାଜ କ୍ରମଶଃ ବଢ଼ି ଚାଲିଥିଲା । ]

## ଦଶମ ଦୃଶ୍ୟ

ଚରିତ୍ର

* ଡାକ୍ତର
* ଅନାମିକା

ସମୟ ରାତି ।

[ ଡାକ୍ତରଙ୍କ ସେହି ପୂର୍ବ ପ୍ରକୋଷ୍ଠ । ଟେବୁଲ୍ ଉପରେ ମଥା ରଖିଥିଲେ ଡାକ୍ତର । ଭିତରେ ଭିତରେ ଖୁବ୍ ଭାଙ୍ଗି ପଡ଼ିଥିଲେ । ମୋବାଇଲ ରିଙ୍ଗ ହୋଇଛି । ମୋବାଇଲ୍ କାନ ପାଖକୁ ନେଇଛନ୍ତି ଡାକ୍ତର । ]

ଡାକ୍ତର : ହାଲୋ, ନା' ଆଜି ମୁଁ ବାହାରେ ଅଛି । ଫେରୁ ଫେରୁ ଚାରି ପାଞ୍ଚଦିନ ଲାଗିବ । ତମେ ରବିବାରକୁ ଆସ । ହୁଁ, ଫୋନ୍ କରି ଆସିବ ।

[ ପୁଣି ରିଙ୍ଗ ହୋଇଛି ସେକେଣ୍ଡ ମୋବାଇଲ । କାନ ପାଖକୁ ନେଇଛନ୍ତି ଡାକ୍ତର । ]

ଡାକ୍ତର : ହାଲୋ, ହୁଁ ମୁଁ ଡକ୍ଟର କହୁଛି । Now I am out of station ! ପନ୍ଦରଦିନ ପାଇଁ ମୁଁ ବାହାରକୁ ଆସିଛି । ଦିଲ୍ଲୀରେ ଅଛି । କେବେ

ଫେରିବି କହିପାରୁନି.....। ଠିକ୍ ଅଛି ଫୋନ୍ କରି ଆସିବ। 'ଏ ନା'..... ନା'..... ରାମୁ ବି ଛୁଟିରେ ଅଛି। ପନ୍ଦର ଦିନ ପରେ ଫୋନ୍ କରନ୍ତୁ।

[ ଆଗରେ ଟେବୁଲ ଉପରେ ଥିଲା Drinks bottle ! ଗ୍ଲାସ୍‌ରେ ଢାଳିଛନ୍ତି। ପିଉଛନ୍ତି। ସିଗାରେଟ୍ ଲଗାଉଛନ୍ତି..... ଆଲୋକ ଡିମ୍ ହୋଇଯାଉଛି। ଭିତରକୁ ପଛପଟୁ ଆସିଛି ଅନାମିକା। କାନ୍ଧ ଉପରେ ହାତ ରଖୁଛି। ଚମକି ପଡ଼ିଛନ୍ତି ଡାକ୍ତର। ଭୟଭୀତ ହୋଇ ଯାଉଛନ୍ତି। ]

ଡାକ୍ତର : କିଏ..... ?

ଅନାମିକା : ମୁଁ ଅନାମିକା। ଏଇ କିଛି ସମୟ ପୂର୍ବରୁ ତମେ ଅନର୍ଗଳ ଭାବେ ମିଛ କଥାଗୁଡ଼ାକ କହିଗଲ !

ଡାକ୍ତର : କାହିଁକି ମୋ ପଛରେ ପଡ଼ିଛୁ ? ମତେ ଟିକେ ଶାନ୍ତିରେ ନିଃଶ୍ୱାସ ମାରିବାକୁ ଦେ।

ଅନାମିକା : ତମର ସେ ଶକ୍ତ ହୃଦୟଟା ଏତେଶୀଘ୍ର ଭାଙ୍ଗି ଚୂରମାର ହେଇଗଲା। କୁଆଡ଼େ ଗଲା ତମର ସେ ବାହାସ୍ଫୋଟ ?

ଡାକ୍ତର : ଅନାମିକା, ସତରେ ମୁଁ ହାରିଯାଇଛି। ଜୀବନରେ ବହୁତ ବଡ଼ ଭୁଲ କରିଛି। ମତେ କ୍ଷମାକରିଦେ। ସେଦିନର ସେ ଭୁଲ୍ ପାଇଁ ମୁଁ ଭୀଷଣ ଅନୁତପ୍ତ।

ଅନାମିକା : ଏତିକି କହିଦେଲେ ମୁଁ ତମକୁ ଛାଡ଼ିଦେବି। ତମେ ଯେଉଁ ଭୁଲ୍ କରିଛ, ତା'ର କ୍ଷମା ନାହିଁ।

ଡାକ୍ତର : ମୁଁ ମାନୁଛି । ମୋ ଦ୍ୱାରା ବହୁତ ଭୁଲ କାର୍ଯ୍ୟ ହେଇଛି । କଥାଦଉଛି । କାଲିଠାରୁ ଏ ଭୁଲ୍‌ର ପୁନରାବୃତ୍ତି ହେବନାହିଁ ।

ଅନାମିକା : ସେଦିନ ଯଦି ଏଇ ଭୁଲକୁ ସୁଧାରିଥା'ନ୍ତ, ମୋର ଆଜି ଏ ଅବସ୍ଥା ହୋଇ ନ ଥା'ନ୍ତା ।

ଡାକ୍ତର : ମୁଁ ଈଶ୍ୱରଙ୍କ ନାମରେ ଶପଥ କରି କହୁଛି, ମୋ ନର୍ସିଙ୍ଗ ହୋମ୍‌ରେ ବେଆଇନ୍ ଲିଙ୍ଗ ନିର୍ଣ୍ଣୟ କିମ୍ବା କନ୍ୟା ଭ୍ରୂଣ ହତ୍ୟା ହେବନାହିଁ । ଏଥର ମତେ ଛାଡ଼ି ଦେ ଅନାମିକା.....

[ ହାତଯୋଡ଼ିଥିଲେ ଅନାମିକାକୁ ଡାକ୍ତର । ଆଲୋକର ରଂଗ ବଦଳି ଯାଉଥିଲା । ଥୋଡ଼ାଏ କଅଁଳ ଶିଶୁର ସମ୍ମିଳିତ କ୍ରନ୍ଦନ ଧ୍ୱନି ବିଳପି ଉଠିଛି । ଧୀରେ ଧୀରେ ଘର ଭିତରୁ ବାହାରି ଯାଇଛି ଅନାମିକା । ଆସ୍ତେ ଆସ୍ତେ ଅନ୍ଧାର ଘନୀଭୂତ ହେବାରେ ଲାଗିଛି । ]

# ଦଶମ ଦୃଶ୍ୟ

[ ଡାକ୍ତର, ଜଗନ୍ନାଥ ଏବଂ ମିତା ଦଉଡୁଥିଲେ Slow motion ରେ । ଗୋଟିଏ ଛୋଟ ଝିଅ ସେମାନଙ୍କୁ ଗୋଡ଼ାଉଥିଲା..... ଆସିଛନ୍ତି ଭିତରକୁ ଲେଖକ ]

ଲେଖକ : ଆପଣମାନେ ରୁହନ୍ତୁ ।

ଏ ଦୌଡ଼ର କ'ଣ ଶେଷ ନାହିଁ ? ଏକ ଅନାଗତ ଭ୍ରୂଣକୁ ସୁରକ୍ଷା ଦେବା କ'ଣ ଆପଣମାନଙ୍କର କର୍ତ୍ତବ୍ୟ ନୁହେଁ ? ଭଏ ହେଉଛି ସେହି କନ୍ୟାଭ୍ରୂଣ.....।

[ ହାତଠାରି ଝିଅଟିକୁ ଦେଖାଇଦେଇଛନ୍ତି । ତିନିହେଁ ଦଉଡୁ ଥିଲେ । ଝିଅଟି ତାଙ୍କୁ ଗୋଡ଼ାଉଥିଲା । ]



# କିଛି ସୂଚନା

1971 ମସିହା ପୂର୍ବରୁ ଭାରତରେ ଗର୍ଭପାତ ସଂପୂର୍ଣ୍ଣ ନିଷିଦ୍ଧ ଥିଲା ।

1971 August ମାସରେ MTP Act ଆସିବାଦ୍ୱାରା ଗର୍ଭପାତ ନିୟମକୁ କିଛିଟା କୋହଳ କରାଗଲା । ଗର୍ଭଧାରଣର ୨୦ ସପ୍ତାହ ମଧ୍ୟରେ କେବଳ ୪ଗୋଟି ସୂତ୍ରରେ ଗର୍ଭପାତକୁ ଅନୁମୋଦନ କରାଯାଇଛି :

୧ - ଯଦି ଏହି ଗର୍ଭଧାରଣଦ୍ୱାରା ମା'ର ଜୀବନ ଏବଂ ସ୍ୱାସ୍ଥ୍ୟ ଉଭୟ ବିପନ୍ନ ହେଉଥାଏ ।

୨ - ଯଦି ଏହି ଗର୍ଭଧାରଣ ଭ୍ରୂଣକୁ ବିକଳାଙ୍ଗ କରୁଥାଏ ।

୩ - ଗର୍ଭନିରୋଧକର ତ୍ରୁଟି ଯଦି ମା'ର ମାନସିକ ଭାରସାମ୍ୟକୁ କ୍ଷତି ପହଁଚାଉଥାଏ ।

୪ - ଯଦି ଏହି ଅବାଂଛିତ ଗର୍ଭ କୌଣସି ଦୁଷର୍ମଦ୍ୱାରା ପରିପ୍ରେରିତ ହୋଇ ମା'ର ମନ ଉପରେ କୁପ୍ରଭାବ ପକାଉଥାଏ ।

While MTP Act provides a framework for provision of abortion services, the PC and PNDT Act regulates the misuse of diagnostic techniques for ditermination of sex of foetus.

Patient's name must appear on OPD Papers and MTP register maintained by the concerned Hospital.

2002- A study on abortion conducted as a part of Abortion Assessment Project.

- Abortion in India is legal in centiain circumstances. It can be performed on various grounds until 20 weeks of pregnancy. In exceptional cases, a court may allow a termination after 20 weeks.
- Abortion can be performed only under 4 conditons.
  1. If continuation of pregnancy poses any risks to the life of the mother or to her physical or mental health.
  2. If the foetus has any severe abnormalities.
  3. If pregnancy occured as a result of failure of contraception (but this is only applicable to married women)
  4. If pregnancy is a result of sexual assult or rape.
- As per the MTP Act, abortion can only be carried out till 20 weeks of conception.
- Gender biased sex selection and safe abortion are mutually exclusive issues within the purview of Indian law. While the MTP Act provides a framework for provision of abortion services, the PC & PNDT Act regulates the missuse of diagnostic techniques for determination of sex of the foetus.
- Your name shall only appear on OPD papers and the MTP register maintained by the Hospital. They are bound by law to maintain secrecy.



## ବିଭିନ୍ନ ପତ୍ରପତ୍ରିକାର ମତାମତ

### ନାଟକ ଅନାଗତ ମଞ୍ଚସ୍ଥ

ମୁଁ ଜନ୍ମ ନେଇ ପାରିନାହିଁ ବୋଲି କ'ଣ ଏ ଦୁନିଆକୁ ଆସିପାରିବି ନାହିଁ ? କିଏ କହିଲା ଆସିପାରିବି ନାହିଁ ? ହଁ, ମୁଁ ଆସୁଛି ଆପଣମାନଙ୍କୁ କିଛି ପ୍ରଶ୍ନ ପଚାରିବାକୁ । ୨୦ ବର୍ଷ ଧରି ମୁଁ ଜଳୁଛି ସେହି ଜ୍ୱଳନ ଆଜି ତା'ର କୈଫତ୍ ମାଗୁଛି ହିସାବ ଚାହୁଁଛି । ଦେଇପାରିବେ ମୋ ପ୍ରଶ୍ନର ଉତ୍ତର ? ନାଁ ମୁଁ କୃଷ୍ଣ ହୋଇପାରିଲି ନା ପ୍ରୀତି । ମତେ ପ୍ରୀତିକୃଷ୍ଣ ସଜେଇଲା କିଏ ? ଏଥିପାଇଁ ଦାୟୀ କିଏ ? ଯୌନ କ୍ରୀଡ଼ା ହୋଇପାରେ ସମୟର ଏକ ଆବଶ୍ୟକତା, ହେଲେ ତାକୁ ପାଶବସ୍ତରକୁ ଘେନିଯିବା କେତେଦୂର ଠିକ୍ ? ନିଜର ଜାତବ କ୍ଷୁଧାର ପରିପୂର୍ତ୍ତି ଗୋଟିଏ ଭ୍ରୁଣକୁ ସୂର୍ଯ୍ୟାଲୋକ ଦେଖିବାକୁ ବଞ୍ଚିତ କରିବା କ'ଣ ଦରକାର ? ଅଶାନ୍ତ ଯୌନକ୍ଷୁଧାର ପରିଣତି ସେମାନେ କାହିଁକି ଭୋଗକରିବେ ନିଷ୍ପାପ ଭ୍ରୁଣଟି କି ଭୁଲ୍ କରିଥିଲା ? କ'ଣପାଇଁ ତା'କୁ ତାର ବାଞ୍ଛିତ ଅଧିକାରରୁ ବଞ୍ଚିତ କରାଗଲା, ଏଭଳି ସାମାଜିକ ବାର୍ତ୍ତାକୁ ନେଇ ନାଟକ 'ଅନାଗତ' ମଞ୍ଚସ୍ଥ ହୋଇଥିଲା ରବୀନ୍ଦ୍ରମଣ୍ଡପ ମଞ୍ଚରେ । ଡ. ନାରାୟଣ ସାହୁଙ୍କ ରଚିତ ସତ୍ୟ ଜେନାଙ୍କ ନିର୍ଦ୍ଦେଶିତ ନାଟକ 'ଅନାଗତ'ରେ ଉପେନ୍ଦ୍ର ପତି, ସଞ୍ଜୟ ପ୍ରଦୀପ, ସନ୍ତୁ, ସୋନିକା ଓ ପିହୁ ପ୍ରମୁଖ ଅଭିନୟ କରିଥିଲେ । ଲାବଣ୍ୟ ଥିଏଟର ପକ୍ଷରୁ ପରିବେଷିତ ନାଟକ 'ଅନାଗତ'ରେ ସହଯୋଗ ଅତିଥିଭାବେ କ୍ୟାମେରାମ୍ୟାନ୍ ଗୋପାଳ ମିଶ୍ର, ଷ୍ଟେଜ୍ ଡିଜାଇନର୍ ପାଣ୍ଡିଆ, ମେକ୍ ଅପ୍ ମ୍ୟାନ୍ ଲୋକନାଥ ବାରିକ ପ୍ରମୁଖ ଯୋଗଦେଇଥିଲେ ।

*(ପ୍ରଗତିବାଦୀ- ୨୭.୩.୨୦୧୯)*

### ମୃତ କନ୍ୟାଭ୍ରୁଣର ଆତ୍ମକାହାଣୀ 'ଅନାଗତ'

କ୍ଷଣଭଙ୍ଗୁର ଦୁନିଆରେ ମଣିଷ ଅନେକ ସମୟରେ ନିଜର ଅସ୍ତିତ୍ୱକୁ ଚିହ୍ନିପାରେ ନାହିଁ କି ବୁଝିପାରେ ନାହିଁ । ଜାଣିଶୁଣି ଭବିଷ୍ୟତକୁ ନେଇ ଅତିମାତ୍ରାରେ ବ୍ୟସ୍ତ ଓ ଚିନ୍ତାପ୍ରାପ୍ତ ହୋଇପଡ଼େ । କନ୍ୟାସନ୍ତାନକୁ ବୋଝ ମନେ କରି ସାମାଜିକ ବିଧିବ୍ୟବସ୍ଥା

ଭିତରେ ଜଳି ହୋଇ ଶେଷରେ ନିଜ ଗର୍ଭର ଭ୍ରୂଣକୁ ହତ୍ୟା କରିବାକୁ ପଛାଏ ନାହିଁ । ପରିଣାମରେ ତାକୁ ଅନେକ ସମୟରେ ଅନୁତାପ କରିବାକୁ ପଡ଼େ । ଏମିତି କି ଏକ ଖିଆଲି ମନୋଭାବପାଇଁ ବାପା-ମାଆଙ୍କୁ ସାଂଘାତିକ ଭାବେ ଅବଶିଷ୍ଟ ଜୀବନ ଜଳି ଜଳି ମରିବାକୁ ହୁଏ । ଭ୍ରୂଣଟି ହୁଏତ ନଷ୍ଟ ହୋଇଯାଏ, ହେଲେ ତା'ର ଯେଉଁ ଚେତନା ଟିକକ ଅନାଗତ ଭାବେ ପାପୀ ବାପା-ମାଆଙ୍କ ଜୀବନ ଭିତରକୁ ବାରମ୍ବାର ଧସେଇ ପଶେ । ଏମିତି କି ତା'ର କ୍ରୁର ପ୍ରଶ୍ନବାଣରୁ ଅସ୍ତ୍ରୋପଚାର କରିଥିବା ଡାକ୍ତର ବି ବର୍ତ୍ତିପାରି ନାହିଁ । ଭ୍ରୂଣଟି ବାରମ୍ବାର କହୁଥାଏ 'ହେ ମୋର ପିତାମାତାଗଣ, ଡାକ୍ତର, ମୁଁ ଜନ୍ମ ନେଇ ପାରିନାହିଁ ବୋଲି କ'ଣ ଏ ଦୁନିଆକୁ ଆସିପାରିବି ନାହିଁ । କିଏ କହିଲା ଆସିପାରିବି ନାହିଁ, ହଁ ମୁଁ ଆସିଛି । ୨୦ବର୍ଷ ଧରି ମୁଁ ତିଳ ତିଳ କରି ଜଳୁଛି । ସେହି ଜ୍ୱଳନ ଆଜି କୈଫିୟତ୍ ମାଗୁଛି, ହିସାବ ଚାହୁଁଛି । କିଏ ଦେବ ଏହି ପ୍ରଶ୍ନର ଉତ୍ତର ? ନିଜକୁ ବଦଳାଇ ଦିଅନ୍ତୁ । କନ୍ୟାଭ୍ରୂଣ ଭଳି ଏକ ଘୃଣ୍ୟ ମାନସିକତାରେ ପରିବର୍ତ୍ତନ ଆଣନ୍ତୁ । ପ୍ରଶ୍ନ ପରେ ପ୍ରଶ୍ନ : ଅନେକ ଅସମାହିତ ପ୍ରଶ୍ନକୁ ସମ୍ମୁଖୀନ ହେବାର ତୁ' ନ ଥାଏ କାହାର । ଏମିତି ଏକ କାହାଣୀକୁ ନେଇ ଭୁବନେଶ୍ୱରର ଲାବଣ୍ୟ ଥିଏଟର ପକ୍ଷରୁ ରବୀନ୍ଦ୍ର ମଣ୍ଡପରେ ମଞ୍ଚସ୍ଥ ହୋଇଯାଇଛି ନାଟକ 'ଅନାଗତ' । ଡ. ନାରାୟଣ ସାହୁଙ୍କ ରଚିତ ଏହି ନାଟକର ନିର୍ଦ୍ଦେଶନା ଦେଇଛନ୍ତି ସତ୍ୟ ଜେନା । ଏଭଳି ଏକ ସାମାଜିକ ସତ୍ୟ ଘଟଣା ଉପରେ ଆଧାରିତ ନାଟକ 'ଅନାଗତ' ଉପସ୍ଥିତ ଦର୍ଶକଙ୍କ ହୃଦୟସ୍ପର୍ଶ କରିଥିଲା । ଏଥିରେ ବିଭିନ୍ନ ଭୂମିକାରେ ପ୍ରଦୀପ ପାଇକରାୟ, ଉପେନ୍ଦ୍ର ପତି, ସଞ୍ଜୟ, ସନ୍ତୁ, ସୋନିକା ଓ ପିହୁ ଅଭିନୟ କରିଥିଲେ । ନାଟକର ଉଦ୍‌ଘାଟନୀ କାର୍ଯ୍ୟକ୍ରମରେ ପୂର୍ବତନ ମେୟର ତଥା ଉପଦେଷ୍ଟା ଅନନ୍ତ ନାରାୟଣ ଜେନା, ଆଇନଜୀବୀ ଧନଞ୍ଜୟ ମହାପାତ୍ର, ସଭାପତି ଆଶୁତୋଷ ଚମ୍ପତି, ଉପସଭାପତି ବିଭୂତିଭୂଷଣ ଚମ୍ପତି, ସମ୍ପାଦକ ସତ୍ୟ ଜେନା, ସଚିବ ସତ୍ୟନାରାୟଣ ଜେନା, ଯୁଗ୍ମ ସଚିବ ନିରଞ୍ଜନ ମହାରଥୀ ପ୍ରମୁଖ ଯୋଗଦେଇଥିଲେ । ଅନ୍ୟମାନଙ୍କ ମଧ୍ୟରେ କବିରାଜ ଜେନା, ପବିତ୍ର ପ୍ରଧାନ, ରବୀନ୍ଦ୍ର ଜେନା ପ୍ରମୁଖ ଉପସ୍ଥିତ ଥିଲେ ।

(ନାଟିଦିନ-୨୭.୩.୨୦୧୯)

## ନାଟ୍ୟଧାରାରେ 'ଅନାଗତ'

ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ, ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଓ ଓଡ଼ିଶା ନାଟ୍ୟସଂଘର ମିଳିତ ସମଯୋଗରେ ସ୍ଥାନୀୟ ଭଞ୍ଜକଳାମଣ୍ଡପରେ ନାଟ୍ୟଧାରା ଅନୁଷ୍ଠିତ ହୋଇଯାଇଛି । ଏହି କ୍ରମରେ ମଞ୍ଚସ୍ଥ ହୋଇଥିଲା ନାଟକ 'ଅନାଗତ' । ନାଟକର ରଚନା ଡ. ନାରାୟଣ ସାହୁ ଦେଇଥିବାବେଳେ ନିର୍ଦ୍ଦେଶନା ଦେଇଥିଲେ ସତ୍ୟ ଜେନା । ନାଟକର କାହାଣୀ କନ୍ୟାଭ୍ରୂଣ ଉପରେ ପର୍ଯ୍ୟବେଶିତ । ବିଭିନ୍ନ ଭୂମିକାରେ ଅଭିନୟ କରିଥିଲେ ଉପେନ୍ଦ୍ର, ସଞ୍ଜୟ, ପ୍ରଦୀପ, ସବ୍ଯ, ସୋନିକା ଓ ପିହୁ । ସନ୍ଧ୍ୟାରେ ଅତିଥି ଭାବେ ନାଟ୍ୟକାର ରଣଜିତ ପଟ୍ଟନାୟକ, ସୁଧାଂଶୁ ଦ୍ୱିବେଦୀ, ନାଟ୍ୟଧାରା ସମ୍ପାଦକ ଲାଲା ବିରେନ ରାୟ, ସଭାପତି ହରେନ ସାହୁ ଏବଂ ପ୍ରକାଶ ମହାରଣା । ଏହି ଅବସରରେ ନାଟକର ଲେଖକ ଏବଂ ନିର୍ଦ୍ଦେଶକଙ୍କୁ ପୁରସ୍କୃତ କରାଯାଇଥିଲା । ନାଟ୍ୟକାର ତଥା ଶିକ୍ଷାବିତ୍ କାର୍ତ୍ତିକ ଚନ୍ଦ୍ର ରଥଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ଏକ ମିନିଟ୍ ନିରବ ପ୍ରାର୍ଥନା କରାଯାଇଥିଲା ।

(ସମାଜ-୨.୪.୨୦୧୯)

## 'ଅନାଗତ'ରେ କନ୍ୟାଭ୍ରୂଣ ସୁରକ୍ଷାର ବାର୍ତ୍ତା

ଲାବଣ୍ୟ ଥିଏଟର ପକ୍ଷରୁ କନ୍ୟାଭ୍ରୂଣ ସୁରକ୍ଷାର ବାର୍ତ୍ତା ନେଇ ନାଟକ 'ଅନାଗତ' ମଞ୍ଚସ୍ଥ ହୋଇଯାଇଛି ।

ରବୀନ୍ଦ୍ର ମଣ୍ଡପରେ ପରିବେଷିତ ନାଟକକୁ ଡ. ନାରାୟଣ ସାହୁ ରଚନା କରିଥିବା ବେଳେ ନିର୍ଦ୍ଦେଶନା ଦେଇଥିଲେ ସତ୍ୟ ଜେନା । ନାଟକର କାହାଣୀ ଅନୁସାରେ କନ୍ୟା ସନ୍ତାନ ନିଜକୁ ବଞ୍ଚାଇବାକୁ ଅନୁରୋଧ କରିଛି । ବିଭିନ୍ନ ଭୂମିକାରେ ଅଭିନୟ କରିଥିଲେ ଉପେନ୍ଦ୍ର, ସଞ୍ଜୟ, ପ୍ରଦୀପ, ସବ୍ଯ, ସୋନିକା ଓ ପିହୁ ।

ସନ୍ଧ୍ୟାରେ ଅତିଥିଭାବେ ଲୋକନାଥ ବାରିକ୍, ଗୋପାଳ ମିଶ୍ର ଯୋଗଦେଇଥିଲେ ।

(ସମାଜ-୨୬.୩.୨୦୧୯)



# ଜାଣିବା ପାଇଁ

୧. ନାମ : ଡ. ନାରାୟଣ ସାହୁ (ଅବସରପ୍ରାପ୍ତ ପ୍ରଫେସର)

୨. ଜନ୍ମମାଟି-ତାରିଖ : ୨୫.୧୧.୧୯୫୫, ଅରଡ଼ାସାହି, ବଗଡ଼ା, କେନ୍ଦ୍ରାପଡ଼ା

୩. ସ୍ଥାୟୀ ଠିକଣା : ୫୮, ମୈତ୍ରୀଜନପଦ, ରୁଦ୍ରପୁର, ନହରକଣ୍ଟା,
ଭୁବନେଶ୍ୱର - ୭୫୨୧୦୧

୪. କାର୍ଯ୍ୟକ୍ଷେତ୍ର : ପ୍ରଫେସର ଓ ଏମେରିଟସ୍ ପ୍ରଫେସର
ସ୍ନାତକୋତ୍ତର ଭାଷା ଓ ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର,
ଭୁବନେଶ୍ୱର - ୭୫୧୦୦୪
ଫୋନ୍ : ୯୪୩୭୯୧୯୧୨୩, ୭୦୦୮୪୮୮୭୫୬

୫. ଶିକ୍ଷାଗତ ଯୋଗ୍ୟତା : ଏମ୍.ଏ., ଏମ୍.ଫିଲ୍, ପିଏଚ୍.ଡି., ଡି.ଲିଟ୍

୬. ବୃତ୍ତି : ଅଧ୍ୟାପନା

୭. ପ୍ରବୃତ୍ତି : ନାଟ୍ୟ ରଚନା

ସୃଷ୍ଟିସମ୍ଭାର : ପ୍ରକାଶିତ

୧. ନାଟକ

- ପ୍ରଶ୍ନ - ପୁସ୍ତକ ମହଲ, ଭୁବନେଶ୍ୱର, ୧୯୮୨
- ଆଗ୍ରାଖୋଜିବୁଲୁଥିବାଈଶ୍ୱର- ତକ୍ଷଶିଳା-୧୯୯୦,ସତ୍ୟନାରାୟଣ-୨୦୧୬
- କାହାଣୀ ସବାଶେଷ ଲୋକର - କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୯୨
- ସୁବର୍ଣ୍ଣ ସକାଳ - କାହାଣୀ, କଟକ, ୧୯୯୮
- ଏକାଙ୍କିକା ମାଧୁରୀ - ତାରାତାରିଣୀ, ବ୍ରହ୍ମପୁର, ୧୯୯୮

- ମୂକ - ଆର୍ଯ୍ୟ ପ୍ରକାଶକ, କଟକ, ୨୦୦୦
- ପୁନଶ୍ଚ ସଂଗ୍ରାମ - ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୨୦୦୦
- ଅପରାହ୍ନର ଅବଶୋଷ - ବିଦ୍ୟାପୁରୀ, କଟକ, ୨୦୦୨
- ଉପାସନା - ପାଦଟୀକା, କଟକ, ୨୦୦୨
- ଅଧାଦେଖା ସ୍ୱପ୍ନ - କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୨୦୦୪
- ପ୍ରାୟଶ୍ଚିତ୍ତ ଓ ଅନ୍ୟାନ୍ୟ ନାଟକ - ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ୨୦୦୫
- କ୍ରାନ୍ତି+ - ଜ୍ଞାନଯୁଗ ପବ୍ଲିକେଶନ, ୨୦୦୭
- ପିଲାଙ୍କ ନାଟକ - ଜ୍ଞାନଯୁଗ ପବ୍ଲିକେଶନ, ୨୦୦୭
- ଦୂର ଆକାଶର ତାରା - ଏଥେନା ବୁକ୍ସ, ୨୦୦୮
- ଶେଷକଥା - ସତ୍ୟନାରାୟଣ, ୨୦୧୦
- ଟିକିମିକିଙ୍କ ନାଟକ - ସତ୍ୟନାରାୟଣ, ୨୦୧୦
- ନିଆରା ନାଟକ - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୧୨
- ଶିଶୁ ନାଟକ - ଏଥେନା ବୁକ୍ସ, ୨୦୧୨
- ଓ' ସବାଶେଷଲୋକ - ସତ୍ୟନାରାୟଣ, ୨୦୧୨
- ମୂଷା - ଏଥେନା ବୁକ୍ସ, ୨୦୧୪
- ବୁଢ଼ୀମା'ର ନାଟପେଡ଼ି - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୧୪
- ଉତ୍ତରପର୍ବ ଓ ଅନ୍ୟାନ୍ୟ ନାଟକ - ବିଦ୍ୟାପୁରୀ, ୨୦୧୪
- ଶେଷକଥା - ସତ୍ୟନାରାୟଣ, ୨୦୧୬
- ତିନୋଟି ନାଟକର ତ୍ରିବେଣୀ - କାହାଣୀ, ୨୦୧୯
- ଅନାଗତ - ସତ୍ୟନାରାୟଣ, ୨୦୧୯

### ୨. ସମାଲୋଚନା ସାହିତ୍ୟ

- ମଧ୍ୟଯୁଗୀୟ ଗଦ୍ୟ ପଦ୍ୟ ସାହିତ୍ୟ : ଏକ ଅଧ୍ୟୟନ - ଆଇ.ବି.ଡି., କଟକ, ୧୯୮୬

- ବାଜିରାଉତ ଏକ ଆଲୋଚନା : ଆଇ.ବି.ଡି., କଟକ, ୧୯୮୭
- ନାଟ୍ୟକାର ବିଜୟ ମିଶ୍ର ଓ ଜଣେ ରାଜା ଥିଲେ - ବୁକ୍ସ ଏଣ୍ଡ ବୁକ୍ସ, କଟକ, ୧୯୮୭
- ପୂଜାରିଣୀ : ଏକ ଦୃଷ୍ଟିପାତ - ଆଇ.ବି.ଡି., କଟକ, ୧୯୯୧
- ଉପେନ୍ଦ୍ରଭଞ୍ଜନାର ଦୃଷ୍ଟି ଓ ଦର୍ଶନ - ବୁକ୍ସ ଏଣ୍ଡ ବୁକ୍ସ, କଟକ, ୧୯୯୨ ସତ୍ୟନାରାୟଣ, ୨୦୨୦
- ପ୍ରାଚୀନ ଭାରତୀୟ ସାହିତ୍ୟ - ବୁକ୍ସ ଏଣ୍ଡ ବୁକ୍ସ, ୧୯୯୨, ସତ୍ୟନାରାୟଣ, ୨୦୧୮
- ଓଡ଼ିଆ ସାହିତ୍ୟର ବିଭିନ୍ନ ଧାରା - ବୁକ୍ସ ଏଣ୍ଡ ବୁକ୍ସ, କଟକ, ୧୯୯୩
- ନାଟ୍ୟତତ୍ତ୍ୱ - ନାଳନ୍ଦା, କଟକ, ୧୯୯୩
- ଓଡ଼ିଆ ସାହିତ୍ୟର ସାମାଜିକ ଓ ସାଂସ୍କୃତିକ ଇତିହାସ - ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୯୪
- ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକ - ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୯୫
- ଭାଓ ଓ କାଳିଚରଣ - ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୯୬
- ବିତର୍କିତ ଅପରାହ୍ନ ଓ ନାଟ୍ୟକାର ମନୋରଞ୍ଜନ - ବୁକ୍ସ୍ ଏଣ୍ଡ ବୁକ୍ସ, କଟକ, ୧୯୯୬
- ରୂଢ଼ିକୋଷ - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୦୨
- ବିଶ୍ୱର ପ୍ରେମକଥା - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୦୩
- ନାଟକ ତତ୍ତ୍ୱ ବିଚାର - ବିଦ୍ୟାପୁରୀ, କଟକ, ୨୦୦୩
- ବ୍ୟାକରଣ ସୌରଭ - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୦୫
- ମଞ୍ଚ ଓ ନାଟକର କଳାକୌଶଳ - ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ୨୦୦୮
- ଓଡ଼ିଆ ପ୍ରବାଦ ପ୍ରବଚନ ଓ ରୂଢ଼ିକୋଷ - ରାଜ୍ୟପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା, ୨୦୧୧

- ଓଡ଼ିଶା, ଆସାମ ଓ ବଙ୍ଗଳାର ଲୋକନାଟ୍ୟ - ସତ୍ୟନାରାୟଣ, ୨୦୧୨, ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ୨୦୧୮
- ଲୋକସାହିତ୍ୟ ଓ ସଂସ୍କୃତିର ପରିଭାଷା - ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା, ୨୦୧୩
- ଅଶ୍ୱିନୀକୁମାର ନାଟ୍ୟ ମାନସ - ଜ୍ଞାନଯୁଗ, ୨୦୧୪
- ସ୍ୱାଧୀନତୋତ୍ତର ଓଡ଼ିଆ ନାଟକ ଓ ଅନ୍ୟ ପ୍ରସଙ୍ଗ- ସତ୍ୟନାରାୟଣ, ୨୦୧୭
- ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ - ସତ୍ୟନାରାୟଣ, ୨୦୧୬
- ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ - ସତ୍ୟନାରାୟଣ, ୨୦୧୯
- ଗବେଷଣା-ଅନୁବାଦ-ସଂପାଦନାକଳା - ସତ୍ୟନାରାୟଣ, ୨୦୧୯
- ନାଟ୍ୟଚର୍ଚ୍ଚା - ଚିନ୍ମୟ ପ୍ରକାଶନ, ୨୦୨୦

## ୩. ସମ୍ପାଦନା

- ମନୋରଞ୍ଜନଙ୍କ ନାଟ୍ୟଦିଗନ୍ତ - ନାଳନ୍ଦା, କଟକ; ୧୯୮୨
- ଗୋପାଳ ଛୋଟରାୟଙ୍କ ନାଟ୍ୟମାନସ - ଗ୍ରନ୍ଥମନ୍ଦିର, କଟକ, ୧୯୮୬
- ଉତ୍ତରାୟଣ - ନାଳନ୍ଦା, କଟକ, ୧୯୯୨
- ନାଟ୍ୟକାର ରାମଚନ୍ଦ୍ର ସ୍ମୃତିବଳୟ - ଆର୍ଯ୍ୟ ପ୍ରକାଶନ, କଟକ, ୧୯୯୩
- ସାଥୀ ଓ ସାରଥୀ - ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ, ୧୯୯୭
- ଗଣେଶ୍ୱର ମିଶ୍ର ସ୍ମୃତି ସମୀକ୍ଷା- ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୦୩

## ୪. ଜୀବନୀ

- ରମାଦେବୀ - ନାୟକ ଭବନ, କଟକ ରୋଡ୍, ଭୁବନେଶ୍ୱର, ୧୯୮୨
- ମା' ରମାଦେବୀ - କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୯୧
- ନିଆରା ମଣିଷ ପ୍ରାଣନାଥ - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୧୩

## ୫. ଶିଶୁ ସାହିତ୍ୟ

- ପୁଟ୍‌ବଲ - କାହାଣୀ, କଟକ, ୧୯୮୮
- ଆମ ପର୍ବପର୍ବାଣି - ଆଲେଖ୍ୟ ପ୍ରକାଶନୀ, ଶହୀଦ୍‌ନଗର, ୧୯୮୯
- ବିଜ୍ଞାନର ଅବଦାନ - ତକ୍ଷଶିଳା, କଟକ, ୧୯୯୧
- ଓଡ଼ିଶାର ପର୍ବପର୍ବାଣି - ତକ୍ଷଶିଳା, କଟକ, ୧୯୯୧
- ବିଶ୍ୱ କ୍ରୀଡ଼ାଜଗତ - କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୯୧
- ଏକ ଦେଶ ଅନେକ ପର୍ବ - କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୯୧
- ଆମ ଖେଳକସରତ - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୦୭
- ପିଲାଙ୍କ ନାଟକ - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୦୭
- ବିଜ୍ଞାନର କରାମତି - ସତ୍ୟନାରାୟଣ, ୨୦୧୦
- ଆମ ଓଡ଼ିଶାର କଥା - ସତ୍ୟନାରାୟଣ, ୨୦୧୦
- ଆମ ଜନ୍ମକଥା - ଜ୍ଞାନଯୁଗ ପବ୍ଲିକେଶନ, ଭୁବନେଶ୍ୱର, ୨୦୧୧

## ୬. ଅପ୍ରକାଶିତ

- ୧୨ଟି ନାଟକ, ୧୪ଟି ଏକାଙ୍କିକା, ୮ଟି ଶିଶୁ ସାହିତ୍ୟ, ୪ଟି ସମାଲୋଚନା

## ୭. ଅନ୍ୟାନ୍ୟ

- ଲାଟ୍‌ସାହେବ - ଚଳଚ୍ଚିତ୍ର
- ଦୂରଦିଗନ୍ତ - ଚଳଚ୍ଚିତ୍ର
- ସାବଧାନ - ଟେଲି ସିରିଏଲ
- ଆମ ଶ୍ରୀମତୀ - ଟେଲି ସିରିଏଲ
- ୭ଟି ଡକୁମେଣ୍ଟାରୀ

## ୮. ପ୍ରାପ୍ତ ସମ୍ମାନ

- ଗୋଦାବରୀଶ ସାହିତ୍ୟ ସମ୍ମାନ - ୨୦୧୯
- ଓଡ଼ିଆ ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର - ୨୦୧୪
- ଓଡ଼ିଆ ସାହିତ୍ୟ ଏକାଡ଼େମୀ ପୁରସ୍କାର - ୧୯୯୧ (ନାଟକ)
- ଆକାଶବାଣୀ ନାଟ୍ୟକାର ପୁରସ୍କାର - ୧୯୯୪
- ଓଟଙ୍କା ପୁରସ୍କାର - ୨୦୦୧
- ବୀରକିଶୋର ସ୍ମୃତି ପୁରସ୍କାର - ୨୦୦୧
- କାହ୍ନୁଚରଣ ସ୍ମୃତି ପୁରସ୍କାର - ୨୦୦୨
- ସହକାର ସମ୍ମାନ (ନାଟକ) - ୨୦୦୨
- ଶ୍ରେଷ୍ଠ ନାଟ୍ୟକାର-ବିଭିନ୍ନ ନାଟ୍ୟ ପ୍ରତିଯୋଗିତା (ଅନ୍ନପୂର୍ଣ୍ଣା, କାସାଣ୍ଡ୍ରା, ନାଟ୍ୟମ୍, ଶାଶ୍ୱତୀ, ବିନ୍ଦୁବଳୟ, ଜନକଲ୍ୟାଣ, ବହୁଭାଷୀ ନାଟକ ପ୍ରତିଯୋଗିତା)
- ମାନପତ୍ର - ପୁନର୍ନବା, ଗୋଦାବରୀଶ ସାହିତ୍ୟ ସଂସଦ, ଅଭୀପ୍ସା
- ଝଙ୍କାର ନାଟକ ପୁରସ୍କାର - ୨୦୦୬
- ଜୀବନରଂଗ ସମ୍ମାନ - ୨୦୦୭
- ନିଖିଳ ଉତ୍କଳ ପ୍ରଗତୀଶୀଳ ଲେଖକ ସଂଘ ସମ୍ମାନ - ୨୦୧୨
- ଶତାବ୍ଦୀର କଳାକାର ସମ୍ମାନ - ୨୦୧୨
- ପ୍ରାଣନାଥ ପଟ୍ଟନାୟକ ସ୍ମୃତି ସମ୍ମାନ - ୨୦୧୩
- ଫକୀରମୋହନ ସ୍ମୃତି ପରିଷଦ ସମ୍ମାନ - ୨୦୧୩
- ମନନ - ରତିରଂଜନ ସମ୍ମାନ -୨୦୧୪



## ପ୍ରକାଶିତ ଏକାଙ୍କିକା

୧. ସବୁଜ ଅନ୍ଧାରର ରଶ୍ମି : ସହକାର (ଜାନୁଆରୀ - ୨୦୩)
୨. ମୃଷା : ବର୍ତ୍ତିକା (ପୂଜାସଂଖ୍ୟା - ୨୦୦୨)
୩. ଶେଷ ଅଙ୍କ : ଅଭିଯାନ (ଅକ୍ଟୋବର - ୨୦୦୩)
୪. ଏକ ଆତ୍ମହତ୍ୟା ସଂପର୍କରେ : ପଦ୍ମପାଦ (ପୂଜାସଂଖ୍ୟା - ୨୦୦୧)
୫. ମହାପୁରୁଷ : ସହକାର (ଜୁନ୍ - ୨୦୦୦)
୬. ଯାହା କହି ହୁଏନା : ସହକାର (ଜାନୁଆରୀ - ୨୦୦୨)
୭. କାଳିଦାସ କଥା : ସହକାର (ନଭେମ୍ବର - ୨୦୦୦)
୮. ବାବାନାମ୍ ଅମୃତମ୍ : ନବରବି (ଜାନୁଆରୀ - ୨୦୦୩)
୯. ନାହିଁ ନାହିଁର ନକ୍ସା : ନବରବି (ଏପ୍ରିଲ୍ - ୨୦୦୨)
୧୦. କୁମ୍ଭକର୍ଣ୍ଣ : କାଦମ୍ବିନୀ (ଜୁନ୍ - ୨୦୦୨)
୧୧. ପୂର୍ବରାଗ : ସହକାର (ଅକ୍ଟୋବର - ୧୯୯୮)
୧୨. ବିରାଗ : ସହକାର (ଅକ୍ଟୋବର - ୨୦୦୧)
୧୩. ବଡ଼ପୁଅ : ମୃଣ୍ମୟୀ (ସେପ୍ଟେମ୍ବର - ୨୦୦୨)
୧୪. ଚିଠି : ବର୍ତ୍ତିକା (ପୂଜାସଂଖ୍ୟା - ୨୦୦୧)
୧୫. ୯୨୦ : ଗୋଧୂଳିଲଗ୍ନ (ପୂଜାସଂଖ୍ୟା)
୧୬. ଫ୍ରଣ୍ଟଲାଇନ୍ : ଇସ୍ତାହାର (ପୂଜାସଂଖ୍ୟା - ୨୦୦୨)
୧୭. ଥରେ ଗୋଡ଼ ଖସିଗଲେ : ବର୍ତ୍ତିକା (ପୂଜାସଂଖ୍ୟା - ୨୦୦୩)
୧୮. ସ୍ୱପ୍ନ : ମୃଣ୍ମୟୀ (ଏପ୍ରିଲ୍ - ୨୦୦୪)
୧୯. ଝଡ଼ରଫୁଲ : ମୃଣ୍ମୟୀ (ଏପ୍ରିଲ୍ - ୨୦୦୨)

| | | |
|---|---|---|
| ୨୦. ଉପନ୍ୟାସ | : | ମୃଣ୍ମୟୀ (ଜାନୁଆରୀ - ୨୦୦୧) |
| ୨୧. ଏମିତି ବି ହୁଏ | : | ଜନସୁଧା (ଅକ୍ଟୋବର - ୨୦୦୦) |
| ୨୨. ଦରଜା ଖୋଲିଦବା | : | ସହକାର (ମେ' - ୨୦୦୨) |
| ୨୩. ଛୋଟକଥା | : | ଗୋଧୂଳିଲଗ୍ନ (୨୧/୨୨ ବର୍ଷ - ୨୦୦୧) |
| ୨୪. ବାର୍ତ୍ତା | : | ବାଣୀବିକାଶ (୩୬ ସଂଖ୍ୟା - ୨୦୦୩) |
| ୨୫. ସେମାନଙ୍କ ଦୁନିଆ | : | କାଦମ୍ବିନୀ (ନଭେମ୍ବର - ୨୦୦୨) |
| ୨୬. ଉତ୍ସବପର୍ବ | : | ବର୍ତ୍ତିକା (ପୂଜା - ୨୦୦୪) |
| ୨୭. ଅପରାହ୍ନର ଆକାଶ | : | ଅଭିଯାନ (ପୂଜା - ୨୦୦୪) |
| ୨୮. ଦାୟୀ କିଏ ? | : | ଜନସୁଧା (ପୂଜା - ୨୦୦୪) |
| ୨୯. ଅଭିମାନ | : | ଝଙ୍କାର (ଜାନୁଆରୀ - ୨୦୦୬) |
| ୩୦. ରେବତୀ | : | ଚାହାଣୀ (ପୂଜାସଂଖ୍ୟା - ୨୦୦୫) |
| ୩୧. ଉପହାର | : | ଆମ ଭାଷା ଆମ ସାହିତ୍ୟ, ୬ଷ୍ଠ ଖଣ୍ଡ, ହୋଲିଫେଥ ଇଣ୍ଟରନାସ୍‌ନାଲ୍ |
| ୩୨. ଶହୀଦ କୃତ୍ତିବାସ | : | ଆମ ଭାଷା ଆମ ସାହିତ୍ୟ, ୭ମ ଖଣ୍ଡ, ହୋଲିଫେଥ ଇଣ୍ଟରନାସ୍‌ନାଲ୍ |
| ୩୩. ବାଘିତୋଟାର ସବୁ | : | ସଂକଳ୍ପ ସୋଭେନିର - ୨୦୦୫ |
| ୩୪. ପୂର୍ଣ୍ଣିମାର ପ୍ରଶ୍ନ | : | କଳିଙ୍ଗ କଳାପରିଷଦ ସୋଭେନିର-୨୦୦୫ |
| ୩୫. ଅସହାୟ ଈଶ୍ୱର | | |
| ୩୬. ଦୂରପରବତ | : | ଜୀବନରଙ୍ଗ - ୨୦୦୮ |
| ୩୭. ସ୍ନେହ | : | ଚନ୍ଦ୍ରଭାଗା (ଏପ୍ରିଲ୍ - ୨୦୦୭) |

❖❖❖

## Radio Play

### ପ୍ରଥମ ଏକାଙ୍କିକା

ଅନ୍ତରାଗର ଏଲିଜି (୧୦.୦୯.୮୧)
ଅସହାୟ ଈଶ୍ୱର (୧୯୯୦)
ଅନ୍ଧକାରୀର ପୂରବୀ (୦୩.୦୫.୧୯୮୨)
ଅମ୍ଳାପଲ୍ଲୀ ସହ ଦିନେ (୧୪.୦୩.୧୯୮୩)
ଏକ ମୃତ ବ୍ୟକ୍ତି ସଂପର୍କରେ (୦୬.୦୨.୧୯୮୩)
ସବୁଜ ଅନ୍ଧାର, ଅନ୍ୟ ଏକ ବର୍ତ୍ତମାନ (୧୯୮୩)
ଶେଷ ପାହାଚ (୧୩.୧୦.୧୯୮୫)
ଅପରାହ୍ନର ଅବଶୋଷ (୦୭.୦୪.୧୯୮୬)
ଜୀର୍ଣ୍ଣ ବିଧ୍ବସ୍ତ କଳେବର (୨୬.୧୦.୧୯୮୬)
ରାଧା (୨୯.୧୨.୧୯୮୬)
ଏକାନ୍ତ ଅନୁଭବ (୧୩.୧୨.୧୯୮୭)
ସାବିତ୍ରୀ ଉପାଖ୍ୟାନମ୍ (୧୯୮୮)
ନିଷିଦ୍ଧ ସଂଳାପ (୧୪.୧୨.୧୯୮୯)
ମୋ ଜୀବନ ପଛେ (୦୮.୦୧.୧୯୯୦)
ପ୍ରଶ୍ନ (୨୭.୦୩.୧୯୯୫)
ଓଦା ମାଟିର ସପନ (୨୮.୦୭.୧୯୯୬)
ଆଉ ଏକ ବାଲ୍ମୀକି (୧୯୯୪)
କାଳିଦାସ କଥା (୧୯୯୯)
ଝଡ଼ (୧୫.୦୬.୨୦୦୧)
ହାʼଅନ୍ନ (୦୮.୦୭.୨୦୦୧)
ସବୁଠୁ ସୁନ୍ଦର ପକ୍ଷୀ (୦୮.୦୩.୨୦୦୬)

## TV. Play

| | | |
|---|---|---|
| ଚେତନା | ପ୍ରାୟଶ୍ଚିତ୍ତ | ମଣିଷ |
| ସୌଦାଗର | ପ୍ରଶ୍ନ | ଅପରାହ୍ନର ଅବଶୋଷ |
| ସାବଧାନ(ଧାରାବାହିକ) | କହିବାକୁ ଲାଜ | କର୍ଣ୍ଣ, ଚିଠି |
| ପାଣ୍ଡ | | ଉତ୍ତରଦାୟୀ |
| ଆମ ଶ୍ରୀମତୀ(ଧାରାବାହିକ) | ସୁବାସ | ଏ ଦୌଡ଼ର କ'ଣ ଶେଷ ନାହିଁ (୧୧.୦୮.୨୦୧୩) |
| | | ଓଦାମାଟିର ସ୍ୱପ୍ନ |



ମୁଁ ଜନ୍ମନେଇ ପାରିନାହିଁ ବୋଲି କ'ଣ ଏ ଦୁନିଆକୁ ଆସିପାରିବି ନାହିଁ? କିଏ କହିଲା ଆସିପାରିବି ନାହିଁ? ହଁ ମୁଁ ଆସିଛି... । ଆପଣମାନଙ୍କୁ କିଛି ପ୍ରଶ୍ନ ପଚାରିବାକୁ । ୨୦ ବର୍ଷ ଧରି ମୁଁ ଜଳୁଛି । ସେହି ଜ୍ୱଳନ ଆଜି ତା'ର କୈଫତ୍ ମାଗୁଛି... ହିସାବ ଚାହୁଁଛି । ଦେଇପାରିବେ ମୋ ପ୍ରଶ୍ନର ଉତ୍ତର?

ହେ ମୋ ପିତାମାତାଗଣ! 'ଯୌନକ୍ରୀଡ଼ା' ହୋଇପାରେ ସମୟର ଏକ ଆବଶ୍ୟକତା ହେଲେ ତାକୁ ପାଣବସ୍ତରକୁ ଘେନିଯିବା କେତେଦୂର ଠିକ୍? ନିଜର ଜୀବନ କ୍ଷୁଧାର ପରିପୂର୍ତ୍ତି ପାଇଁ ଗୋଟାଏ ଭ୍ରୁଣକୁ ସୂର୍ଯ୍ୟାଲୋକ ଦେଖିବାରୁ ବଞ୍ଚିତ କରିବା କ'ଣ ଦରକାର? ଅଶାନ୍ତ ଯୌନକ୍ଷୁଧାର ପରିଣତି ସେମାନେ କାହିଁକି ଭୋଗକରିବେ? ନିଷ୍ପାପ ଭ୍ରୁଣଟି କି ଭୁଲ୍ କରିଥିଲା? କ'ଣ ପାଇଁ ତାକୁ ତା'ର 'ବାଞ୍ଛିତ' ଅଧିକାରରୁ 'ବଞ୍ଚିତ' କରାଗଲା?

ଅନୁରୋଧ ନିଜକୁ ବଦଳାଇ ଦିଅନ୍ତୁ । ଏକ ରୁଗ୍ଣ ମାନସିକତାରେ ପରିବର୍ତ୍ତନ ଆଣନ୍ତୁ । ହେ ମୋର ପିତାମାତାଗଣ! ଏଇଟା ମୋର କେବଳ ଅନୁରୋଧ ନୁହେଁ, ବରଂ ଏକ ଭିକ୍ଷା... ଦାବି...! ଏ ବନ୍ଦ ତାଲାକୁ ଖୋଲିବାର ଦାୟିତ୍ୱ ଆପଣମାନଙ୍କର!



ରଚନା
ଡକ୍ଟର ନାରାୟଣ ସାହୁ



ନିର୍ଦ୍ଦେଶକ
ସତ୍ୟ ଜେନା (ଟୁନୁ)



ସତ୍ୟନାରାୟଣ ବୁକ୍ ଷ୍ଟୋର


ISBN 81-8118-271-5